# ପ୍ରତ୍ୟୟ

**(Journal of Odia Language, Culture and Science)**

JournalHomepage:http://cphfs.in/research.php




# ରାମଚନ୍ଦ୍ର ବେହେରାଙ୍କ କଥାସାହିତ୍ୟରେ ନିଃସଙ୍ଗତାବୋଧ ଓ ଅସହାୟତା


**ଡ. ବିଷ୍ଣୁପ୍ରିୟା ଓଟା**

ବିଭାଗମୁଖ୍ୟ, ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,

ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର – ୭୫୧୦୦୪

E-mail: bpotta@gmail.com



***ସଂକ୍ଷିପ୍ତ ପରିଚୟ*** - *ନିଃସଙ୍ଗତାବୋଧର ସର୍ବଶ୍ରେଷ୍ଠ ସୂଚନା ହେଉଛି ବିଚ୍ଛିନ୍ନତାବୋଧ । ଅସ୍ତିତ୍ୱବାଦୀମାନେ ମଣିଷର ଏହି ଏକାକୀ ଅନୁଭବଟିକୁ ବେଶ ନିବିଡ଼ତାର ସହ ଲକ୍ଷ୍ୟ କରିଛନ୍ତି । ରାମଚନ୍ଦ୍ର ବେହେରାଙ୍କ 'ଦ୍ୱିତୀୟ ଶ୍ମଶାନ'ରେ ସଂକଳିତ ପ୍ରତିଟି ଗଳ୍ପରେ ତୀବ୍ର ନିଃସଙ୍ଗତା ପରିଲକ୍ଷିତ । ଅନୁରୂପଭାବେ 'ପ୍ରତିଧ୍ୱନି'ରେ ଦୁଇ ବିପରୀତମୁଖୀ ଜୀବନ ପ୍ରବାହ ମଧ୍ୟରେ ଜାତ ହୋଇଛି ଅନ୍ତର୍ଦ୍ୱନ୍ଦ୍ୱ, ସଂଘର୍ଷ, ହତାଶା, ବ୍ୟର୍ଥତା, ନିଃସଙ୍ଗତା, କାରୁଣ୍ୟ ଓ ବିଷାଦ ଭାବର ପରିପ୍ରକାଶ ଘଟିଛି। 'ଶେଷ' ଗଳ୍ପରେ ଅସଫଳତାର ନୈରାଶ୍ୟବୋଧ ହେଉଛି ଜୀବନର ଅନନ୍ତ ଶେଷ ।*



***ପ୍ରମୁଖଶବ୍ଦାବଳୀ-****(Keywords)* - ନିଃସଙ୍ଗତା, ଅସ୍ତିତ୍ୱବାଦୀ, ଶେଷ ସୂର୍ଯ୍ୟର ବହ୍ନି, ଦ୍ୱିତୀୟ ଶ୍ମଶାନ


### ବ୍ୟକ୍ତିର ନିଃସଙ୍ଗତାବୋଧ ଓ ଅସହାୟତା

ଆଜିର ମଣିଷ ନିଃସଙ୍ଗ । ସେ ନିଃସଙ୍ଗତାକୁ ଅନୁଭବ କରେ । ଆଧୁନିକ ମଣିଷ ନେତିବାଦୀର ସ୍ୱର ବା ଶୂନ୍ୟତାର ଅନୁଭବକୁ ତୀବ୍ର ଅନୁଭବ କରିଛି । ପାର୍ଥିବ ଜୀବନର ସମସ୍ତ ପ୍ରାପ୍ତି ମଧ୍ୟରେ ହରାଇବାର ଏକ ବିକଳ କାରୁଣ୍ୟ ବ୍ୟକ୍ତି ମଣିଷକୁ ଯେଉଁ ଗଭୀର ଉଦାସୀନତା ମଧ୍ୟକୁ ଠେଲି ଦେଇଅଛି, ତା'ର ଏକ ଉଦାସ ବ୍ୟାପ୍ତି ଜୀବନକୁ ନିରସ କରିଅଛି । ମୂଲ୍ୟବୋଧହୀନ ଜୀବନ, ଗତିହୀନ ପ୍ରାଣ, ଶୁଖିଲା ଅନୁଭବ, ନିଛାଟିଆ ବେଳା- ସବୁଥିରେ ଏକ ନାହିଁ ନାହିଁ ଭାବ ।(୧)

ଆଜିର ଜୀବନ ତା'ର ସକଳ କ୍ରିୟାକର୍ମ, ନିପୁଣତା ଓ ଆନ୍ତରିକତା ସତ୍ତ୍ୱେ କିପରି ନିଜ ଭିତରେ ନିଜକୁ ମଧ୍ୟ ହରାଇ ବସିଛି । ସେଥିପାଇଁ କୁହାଯାଇଛି, ସେ ଏକାକୀ, ଏକେଲା, ନିଛାଟିଆ, ତା'ପାଇଁ ସମସ୍ତେ ଅଛନ୍ତି, କେହି ନାହାନ୍ତି । ଶୂନ୍ୟତା ତା' ଆଗେ ଆଗେ, ପଛେ ପଛେ । ନିଜର ଅପୂର୍ଣ୍ଣତା ଭୁଲି ବ୍ୟକ୍ତି ମଣିଷଟି ଯେତେବେଳେ ଅବା ସ୍ୱପ୍ନିଳ ଓ ଗୀତିମୟ ହେବାକୁ ଚେଷ୍ଟା କରିଛି, ସେତେବେଳେ ତା'ର ଦୁଃସ୍ଥିତି ତାକୁ ଉପହାସ କରିଛି ।

ନିଃସଙ୍ଗତାବୋଧର ସର୍ବଶ୍ରେଷ୍ଠ ସୂଚନା ହେଉଛି ବିଚ୍ଛିନ୍ନତାବୋଧ । ଏହା ବ୍ୟକ୍ତିକୁ ଆରିଷ୍ଟଟଲଙ୍କ 'ସାମାଜିକ ମଣିଷ' ନ୍ୟାୟରେ ବିଚାର କରିବାକୁ ପ୍ରସ୍ତୁତ ନୁହେଁ । ବରଂ କିଏର୍କଗାର୍ଦଙ୍କ ବିଚ୍ଛିନ୍ନ ମଣିଷ ବା ଏଲଏନେଟଡ ମ୍ୟାନ ହେଉଛି ତା'ର ସର୍ବଶ୍ରେଷ୍ଠ ପରିଚୟ । କିଏର୍କଗାର୍ଦ ଲକ୍ଷ୍ୟ କରିଥିଲେ ଯେ ସମାଜ ଓ ଜନତା ସର୍ବଦା ବ୍ୟକ୍ତିକୁ ଗାଳି ଦେବାକୁ ଉଦ୍ୟମ କରିଆସିଛନ୍ତି ଏବଂ ସେମାନଙ୍କ କବଳରୁ ମୁକ୍ତି ଦେବାପାଇଁ ସେ ବ୍ୟକ୍ତି ମାଧ୍ୟମରେ ଆତ୍ମ ସଚେତନତା ସୃଷ୍ଟି କରିବାକୁ ଚାହିଁଥିଲେ । ସେଥିପାଇଁ ସେ ଇଚ୍ଛା କରିଥିଲେ ପଲ ବା ଗୋଠରେ ନ ରହି ଜଣକିଆ ହେବେ ।

ପ୍ରତ୍ୟେକ ମଣିଷ କିଛି କିଛି ପରିମାଣରେ ଏକୁଟିଆ ଓ ନିଃସଙ୍ଗ । ଅସ୍ତିତ୍ୱବାଦୀମାନେ ମଣିଷର ଏହି ଏକାକୀ ଅନୁଭବଟିକୁ ବେଶ ନିବିଡ଼ତାର ସହ ଲକ୍ଷ୍ୟ କରିଛନ୍ତି । "ଜୀବନର ବିଭିନ୍ନ ପର୍ଯ୍ୟାୟରେ, ବିଭିନ୍ନ ପରିସ୍ଥିତିରେ ଏ ନିଃସଙ୍ଗତା ଆସେ । ଏହା କେତେବେଳେ ଆସେ ଜୀବନ ପ୍ରତି ଆମର କର୍ମରୁ ବା କର୍ମହୀନତାରୁ । ପୁଣି କେତେବେଳେ ବା ନିହାତି ଅବୈକ୍ତିକ ଭାବେ ଆସି ଆମ ଜୀବନକୁ ଘାରିଯାଏ । ତେଣୁ ନିଃସଙ୍ଗତା ଏକମାତ୍ର ସହଚର, ଏହା କେତେବେଳେ ଆମକୁ ତା' ଭୀଷଣତାର ଭୟ ଦେଖାଇଛି, କେତେବେଳେ ବା ମାଧୁର୍ଯ୍ୟରେ ଆମକୁ ଆକୃଷ୍ଟ କରିଛି, କେତେବେଳେ ବା ନିହାତି କ୍ରୂର ହୋଇ ତିଳ ତିଳ କରି ଆମ ପ୍ରାଣକୁ ଶୋଷି ନେଇଛି ।"(୨)

ନିଃସଙ୍ଗତା ମଣିଷର ବିଭିନ୍ନ ସ୍ତରରେ ଘଟେ । ତାହା ସାମାଜିକ, ମାନସିକ, ଆଧ୍ୟାତ୍ମିକ ଏପରିକି ଦୈହିକ ସ୍ତରରେ ମଧ୍ୟ ଘଟେ । ରାମଚନ୍ଦ୍ର ବେହେରାଙ୍କ କଥା ସାହିତ୍ୟରେ ସାମାଜିକ ନିଃସଙ୍ଗତାର ଚିତ୍ର ଦେଖିବାକୁ ମିଳେ । 'ଶେଷ ସୂର୍ଯ୍ୟର ବହ୍ନି' (୧୯୭୧) ପ୍ରଥମେ ନବରବିରେ ଆତ୍ମପ୍ରକାଶ କରିଥିଲା । ଏହି ଗଳ୍ପ ସୃଷ୍ଟି ହେବାବେଳକୁ ଗାଳ୍ପିକଙ୍କୁ ବୟସ ଛବିଶ ବର୍ଷ । ଏହି ବୟସରେ ସେ ଜଣେ ପୌଢ଼ ଅବସରପ୍ରାପ୍ତ ମଣିଷର ଅନୁଭୂତିକୁ ଆତ୍ମସ୍ଥ କରି ଶକ୍ତିଶାଳୀ ରୀତିରେ ଉପସ୍ଥାପନ କରିଛନ୍ତି । 'ଶେଷ ସୂର୍ଯ୍ୟର

ବହ୍ନି'ର ଅବିନାଶବାବୁ ଜୀବନର ଦୀର୍ଘ ତିରିଶବର୍ଷର ସେକ୍ରେଟେରୀଏଟ୍ ଚାକିରି କାଳରେ କ୍ଷମତା, ପ୍ରତିପତ୍ତି, ପ୍ରତିଷ୍ଠା ପାଇଛନ୍ତି । ଅବସର ପରେ ସେ ନିଜକୁ ଅସହାୟ ମନେ କରିଛନ୍ତି ପୂର୍ବ ପ୍ରତିଷ୍ଠା ଓ ସରକାରୀ କ୍ୱାର୍ଟରର ମୋହ ତାଙ୍କୁ ଅଧିକ ଅସ୍ଥିର କରି ପକାଇଛି ।

"କ୍ୱାଟର୍ସଟିରେ ସବୁଦିନ ଭଳି ନୀରବତା ଓ ଶୃଙ୍ଖଳା ନେସି ହୋଇ ରହିଥିଲା । ସେଇଟା ସତେ ଯେପରି ସବୁଦିନ ପାଇଁ ଆଶ୍ରୟ ନେବାକୁ ଉଦ୍‌ବିଗ୍ନତାର ସହିତ ତାଙ୍କର ଫେରିବା ବାଟକୁ ଚାହିଁବସିଛି । ତାଙ୍କପାଇଁ ସେକ୍ରେଟେରୀଏଟ୍‌ର ସବୁଦିନ ନିମନ୍ତେ ରୁଦ୍ଧଦ୍ୱାର ଓ କ୍ୱାଟର୍ସଟିର ତାଙ୍କପାଇଁ ଉତ୍କଣ୍ଠିତ ପ୍ରତୀକ୍ଷା। ଅବିନାଶବାବୁ ନିଜ ଭିତରୁ ଏକ କରୁଣ ମୂର୍ଚ୍ଛନାର ଧ୍ୱନି ଶୁଣିବାକୁ ପାଉଥିଲେ । କ୍ୱାଟର୍ସର ଗୋଟିଏ ଖମ୍ବକୁ ଆଉଜି, ତାହାରି ଉପରେ ସେ ନିଜର ଦୁଇହାତ ପାପୁଲି ଜୋର୍‌ରେ ଘଷିବାକୁ ଲାଗିଲେ ଏବଂ ତାଙ୍କ ପ୍ରତି କ୍ୱାଟର୍ସର ରହିଥିବା ଅବ୍ୟକ୍ତ ମମତା ଓ ସ୍ନେହ ଅନୁଭବ କରିବାକୁ ଚେଷ୍ଟା କଲେ ।"(୩)

'ଦ୍ୱିତୀୟ ଶ୍ମଶାନ'ରେ ସଂକଳିତ ପ୍ରତିଟି ଗଳ୍ପରେ ତୀବ୍ର ନିଃସଙ୍ଗତା ପରିଲକ୍ଷିତ । ଘର, ମଧ୍ୟାହ୍ନର ଛାଇ, ଆରୋହଣ, ପଞ୍ଜୁରା, କୁହୁଡ଼ି ଓ ତୃଷ୍ଣା, ବର୍ଣ୍ଣବୋଧ ପାଠ, ଭୟ, ଦ୍ୱିତୀୟ ଶ୍ମଶାନ ପ୍ରଭୃତି ଗଳ୍ପ ଶେଷ ହୋଇଥାଏ ତୀବ୍ର ନିଃସଙ୍ଗତା ମଧ୍ୟରେ ଅବା କାରୁଣ୍ୟର ଅକୁହା ହା ହୁତାଶମୟ ଯନ୍ତ୍ରଣା ମଧ୍ୟରେ ।

'ଘର' ଗଳ୍ପଟି ଏକ ପ୍ରଭାବଶାଳୀ ଗଳ୍ପ । ଅବଚେତନ ମନର ଆଶା ଆକାଂକ୍ଷା ଏହି ଗଳ୍ପଟିରେ ପ୍ରତୀକାତ୍ମକ ଭାବରେ ବର୍ଣ୍ଣିତ । ବ୍ୟକ୍ତିସତ୍ତାର ଆତ୍ମ ବିଚ୍ଛିନ୍ନତା ଗୋଟିଏ କରୁଣ ବେହାଗ ସୃଷ୍ଟି କରିଛି । ଶଙ୍କାଗ୍ରସ୍ତ ମଣିଷ ବାରମ୍ବାର ହତାଶାରେ ଭାଙ୍ଗିପଡୁଥାଏ, ବ୍ୟର୍ଥତାରେ, ରୁଗ୍ଣ ମାନସିକତାରେ । ଏହି ଗଳ୍ପରେ ଗାଳ୍ପିକ ଦ୍ୱିଧାବିଭକ୍ତ, ସନ୍ଦିଗ୍ଧ ମାନସିକତାକୁ ପରିବେଷଣ କରିଛନ୍ତି ।

"ଏ ଘର କାହା ବିରୁଦ୍ଧରେ ଆମକୁ ପ୍ରତିରକ୍ଷା କରିବ? ଆଶା ଶୂନ୍ୟତା ବିରୁଦ୍ଧରେ? ନିଷ୍ଫଳତା ବିରୁଦ୍ଧରେ? ଅଥଚ ଏ ଘର ସଙ୍ଗେ ଘନିଷ୍ଠତା ବଢ଼ିବା ଦିନୁ ମୁଁ ଖାଲି ଦେଖିଆସୁଛି ପରାଜୟ ଓ ଧ୍ୱଂସ ପ୍ରେମର, ବୈବାହିକ ଜୀବନର ଓ ବଞ୍ଚିଚେବାର । ଆଜି ଆମେ ଦୁହେଁ ଆସିବୁ । ଆମ ପରେ ଆହୁରି ଆସିବେ । ଏ ଘର ଏକ ସଂକୁଚିତ ପୃଥିବୀ ।"(୪)

'ମଧ୍ୟାହ୍ନର ଛାଇ' ଗଛରେ ରେବାକାପୁରଙ୍କ ଅସଫଳ ବୈବାହିକ ଜୀବନ, ରୁଗ୍ଣ ମାନସିକତା ଓ ନିଃସଙ୍ଗତା ପ୍ରକାଶ ପାଇଛି । ରେବାକାପୁରଙ୍କ ଅବଚେତନ ମନରେ ଥିବା ପ୍ରେମଜନିତ ବିଫଳତା, ଅଭାବବୋଧ, ଅସନ୍ତୋଷ ନିଃସଙ୍ଗତାକୁ ଇଙ୍ଗିତ କରିଛି । ତେବେ ମିଷ୍ଟର ଦାସଙ୍କ ସହିତ ସାକ୍ଷାତ ପରେ ଗଳ୍ପର ମୋଡ଼ ପରିବର୍ତ୍ତିତ ହୋଇଛି । ନିଃସଙ୍ଗ ରେବାକାପୁରଙ୍କୁ ମିଷ୍ଟର ଦାସଙ୍କ ଆବିର୍ଭାବ ପୁଣି ଚମକପ୍ରଦ ମୋଡ଼ ଦେଇଛି ।

'ଅନ୍ଧୁଣୀ' ଗଳ୍ପରେ ମା'ର ସ୍ନିଗ୍ଧ ଚେହେରାଟି ଫୁଟିଉଠେ। ଜୀବନର ଯାବତୀୟ ଦୁଃଖ, ଦୈନ୍ୟ, ଶୂନ୍ୟତା, ନିଃସଙ୍ଗତା ଭିତରେ ଏଇ ବାତ୍ସଲ୍ୟର ସ୍ୱରୂପ ସବୁ ରିକ୍ତତାକୁ ପୂର୍ଣ୍ଣ କରିଦିଏ। ଏହି ଗଳ୍ପରେ ମା'ର ମମତା ଆଲୋକ ଏବଂ ଅନ୍ଧତ୍ୱର, ଅନ୍ଧକାର ନିଃସଙ୍ଗତାର ପରିଚୟ । ତେବେ ଅନ୍ଧକାର ଏକ ବିଚିତ୍ର ସତ୍ୟ ନୁହେଁ ତ ଆଉ କ'ଣ? ଆଲୋକର ସୀମା ଦିଗ୍‌ବଳୟ ହୋଇପାରେ । ଆକାଶ ହୋଇପାରେ । ଆଲୋକ ସ୍ଥିତି ସମ୍ପର୍କରେ ଆମକୁ ସଚେତନ କରିଦିଏ ଏବଂ ଅପୂର୍ବ ସାହସ ଆଣିଦିଏ, ଆତ୍ମପ୍ରତ୍ୟୟ ବଢ଼ାଇଦିଏ । କିନ୍ତୁ କେତେ ସୀମିତ ଏଇ ଆଲୋକ । ମାତ୍ର ଅନ୍ଧକାର ଯେକୌଣସି ସୀମାରେଖାକୁ ଅସ୍ୱୀକାର କରେ । ଏହା ଲଙ୍ଘନ କରେ ଦିଗବଳୟର ବାଡ଼କୁ । ଏହା ଉପହାସ କରେ ଆକାଶର ବ୍ୟାପ୍ତିକୁ । କହ ତ ଭଲ, ତୁମେ ଆଖିବୁଜି କିଭଳି ଭାବରେ ମାପିପାରିବ ତୁମ ଚାରିପାଖରେ ରହିଥିବା ଅନ୍ଧାକର ପରିଧିକୁ?(୫)

'ପ୍ରତିଧ୍ୱନି'ରେ ଦୁଇ ବିପରୀତମୁଖୀ ଜୀବନ ପ୍ରବାହ ମଧ୍ୟରେ ଜାତ ହୋଇଛି ଅନ୍ତର୍ଦ୍ୱନ୍ଦ୍ୱ, ସଂଘର୍ଷ, ହତାଶା, ବ୍ୟର୍ଥତା, ନିଃସଙ୍ଗତା, କାରୁଣ୍ୟ ଓ ବିଷାଦ । ପ୍ରତିଧ୍ୱନି ଗଳ୍ପର ନାୟକ ରଞ୍ଜନ । ସେ ବିତସ୍ପୃହ ହୋଇ କୋର୍ଟରେ ଚିତ୍କାର କରି କହିଛି- "ତାକୁ ମୁଁ ପ୍ରତ୍ୟାଖ୍ୟାନ କରିବାକୁ ଚାହେଁ । ମୁଁ ତାକୁ ଘୃଣା କରେ। ସ୍ତ୍ରୀର ଅର୍ଥ କ'ଣ? କିଏ ମୋ ସ୍ତ୍ରୀ? କିଏ କାହାର ସ୍ତ୍ରୀ? ତୁମେ ଦୃଢ଼ତାର ସହିତ କହିପାରିବ କି, ତୁମ ସ୍ତ୍ରୀ ତୁମ ବ୍ୟତୀତ ଅନ୍ୟ କୌଣସି ପୁରୁଷର କଥା ଆଦୌ ଚିନ୍ତା କରେ ନାହିଁ । କେଉଁ ସ୍ତ୍ରୀର ଐକାନ୍ତିକ ପ୍ରେମ ଅଛି ଯେଉଁ ସ୍ତ୍ରୀ ଉପବାସ କରି ସାବିତ୍ରୀ ବ୍ରତ ପାଳନ କରେ? ଯେଉଁ ସ୍ତ୍ରୀ ସ୍ୱାମୀର ଛାତିରେ ମୁହଁ ଗୁଞ୍ଜି କହେ, ତୁମେ କେବେ ଭଲ ଏବଂ ସ୍ୱାମୀର ଅନୁପସ୍ଥିତିରେ ଟ୍ରଙ୍କ ଖୋଲି ଅନ୍ୟ କାହାଠାରୁ ଆସିଥିବା ଚିଠିକୁ ଛାତିରେ ଜାକିଧରି କହେ ତୁମକୁ ବିବାହ ନ କରି ନିଜକୁ ନଷ୍ଟ କଲି ମୁଁ, ଏ ଜୀବନରେ ତୁମେ ମୋର ହୋଇପାରିଲ ନାହିଁ? ମୁଁ ସେଇ ସ୍ୱାମୀକୁ ଦେଖିବାକୁ ଚାହେଁ ଯିଏ ତା' ସ୍ତ୍ରୀକୁ ସନ୍ଦେହ କରିନାହିଁ ।"(୬)

'ଆତ୍ମହତ୍ୟା'ରେ ରହିଛି ବାସ୍ତବଧର୍ମିତା । ପରାଜୟର ଗ୍ଲାନିରେ ଜର୍ଜର ମଣିଷର ସ୍ୱରୂପ ଏହି ଗଳ୍ପରେ ପ୍ରତିପାଦନ । ଜୀବନପ୍ରତି ଘୋର ବିତୃଷ୍ଣା ପରିତୋଷ ବାବୁଙ୍କର ମୃତ୍ୟୁ ପାଇଁ ତୀବ୍ର ବ୍ୟାକୁଳତା ସୃଷ୍ଟି କରିଥିଲା । ସେ ନିଃସଙ୍ଗ ହୋଇପଡ଼ିଥିଲେ । ପୁତ୍ରମାନେ ସମ୍ପର୍କ କାଟିଦେବା ପରେ ସେ ଅସହାୟ ବୋଧ କରିଛନ୍ତି । ଟ୍ରକ ଦୁର୍ଘଟଣାରେ ପ୍ରାଣ ହରାଇବା ପରେ କନ୍ୟା ସୁନନ୍ଦାର ଅକାଳ ବୈଧବ୍ୟ ପରିତୋଷ ବାବୁଙ୍କର ଅସଫଳ ଦୁଃଖଦ ଜୀବନର ଇତିବୃତ୍ତ ଥିଲା । "ମୁଁ ଭାବୁଛି ଯେଉଁମାନେ ଆତ୍ମହତ୍ୟା କରନ୍ତି ସେମାନେ ନିଃସନ୍ଦେହ ଭାବରେ ବିଜ୍ଞ। ଏମାନଙ୍କର ନିଜପ୍ରତି ଓ ସଂସାରପ୍ରତି ଧାରଣା ନିର୍ଭୁଲ। ଆତ୍ମହତ୍ୟ ଏକ ବ୍ୟକ୍ତିଗତ ପ୍ରତିବାଦ । ଏହା ପ୍ରମାଣ କରେ ଯେ, ବ୍ୟକ୍ତିବିଶେଷର ମୂଲ୍ୟବୋଧ ଓ କ୍ଷମତା, ତା' ଚାରିଆଡ଼େ ଥିବା ସାମାଜିକ ହିଂସ୍ରତା ସହିତ ଖାପଖୁଆଇ ଚଳିପାରୁନାହିଁ କିମ୍ବା ତା' ତୁଳନାରେ ଯଥେଷ୍ଟ ହେଉ ନାହିଁ । ଆତ୍ମହତ୍ୟା ଜୀବନକୁ ମୃତ୍ୟୁ ପର୍ଯ୍ୟନ୍ତ ଗତିକୁ ତ୍ୱରାନ୍ୱିତ କରେ । ଏହା ଜୀବନକୁ ସଂକ୍ଷିପ୍ତ କରେ । ପରାଜୟଜନିତ ଦୀର୍ଘ ହା ହାକାରକୁ ରକ୍ଷା କରେ । ଏକ ବର୍ଣ୍ଣାଢ଼୍ୟ ରୂପରେ ବ୍ୟକ୍ତିକୁ ମାପିବାରେ ସାହାଯ୍ୟ କରେ ।(୭)

'ସୀମାବଦ୍ଧ' ଗଳ୍ପଟିରେ ଅସହାୟତା, ଅଭିଶପ୍ତ ଜୀବନ ଓ ନିଃସଙ୍ଗତାର ଚିତ୍ର ମାର୍ମିକ । ଜରାଜୀର୍ଣ୍ଣ ଆଭିଜାତ୍ୟପୂର୍ଣ୍ଣ ରାୟବାହାଦୂର ପରିବାରର ଅପସୃୟମାନ ପ୍ରତିଷ୍ଠା ଓ ପ୍ରତିପତ୍ତିର ମନୋଜ୍ଞ ଚିତ୍ର ପ୍ରତିପାଦିତ ହୋଇଛି । ଗ୍ରୀନ୍‌ଭିଲା ପ୍ରାସାଦ ଦିନେ ଥିଲା ପ୍ରାଚୁର୍ଯ୍ୟ ଓ ଐଶ୍ୱର୍ଯ୍ୟର ସଂକେତ । ତାହା ଆଜି ଅଭିଶପ୍ତ ଭଗ୍ନ କବର । ଯେଉଁ ଘରେ ଜୀବନ କୋଳାହଳ ମୁଖରିତ ଥିଲା, ସେ ଘରେ ବାଦୁଡ଼ି, ମୂଷା, ଚୁଚୁନ୍ଦ୍ରାମାନଙ୍କର ଆଧିପତ୍ୟ । ଶିଉଳି ସଂକ୍ରମିତ କାନ୍ଥ, କାଚ ନ ଥିବା ତୈଳଚିତ୍ର, ଭଙ୍ଗା ଫର୍ନିଚର, ଛିଣ୍ଡା ବିଛଣା ପ୍ରଭୃତି ଏକ ନିଃସଙ୍ଗ ଓ ଅସହାୟତାର ଚିତ୍ର । "ଗୋଟିଏ ପିଆନୋ ଅଥର୍ବ

ହୋଇଯାଇଥିଲା, ବ୍ୟବହୃତ ହୋଇସାରିଥିବା ଗୋଟିଏ ଶୁଷ୍କ ଇଞ୍ଜେକ୍ସନ ଶିଶିଉଳି ।"(୮)

'ଅଚିହ୍ନା ପୃଥିବୀ' ଗଳ୍ପ ସଂକଳନର 'ଅନ୍ୟ ଅନୁଭୂତି' ଗଳ୍ପଟିରେ ସହରୀ ଜୀବନର ବିଷର୍ଣ୍ଣ ଚେହେରା ଫୁଟିଉଠିଛି । ନାୟିକା ସୁମିତ୍ରା ମହୁଫେଣା ପରି ଗୋଟିଏ ଫ୍ଲାଟରେ ତା'ର ବୈବାହିକ ଜୀବନ ଆରମ୍ଭ ଅବସରରେ ନିଃସଙ୍ଗତାକୁ ଅନୁଭବ କରିଛନ୍ତି । ସହରକୁ ନେଇ ସବୁ କଳ୍ପନା ମିଥ୍ୟା ପ୍ରମାଣିତ ହୋଇଛି । ଗାଁର ସକଳ ସ୍ୱପ୍ନ ପାଣିଫୋଟକା ପରି ଉଭେଇ ଯାଇଛି । ସେଠି ଗାଁ ପୋଖରୀ, ହଳଦୀମଖା ଝିଅ, କୁଆଁରୀ କନ୍ୟାଙ୍କ କୋଳାହଳ, ଖିଲି ଖିଲି ଲତା କଇଁପରି ହସ, ଝିଅବୋହୂଙ୍କର ଦୋଳିଗୀତ, ଓଢ଼ଣାଢଙ୍କା ବୋହୂ, ଲାଜମିଶା ମୁହଁ, ସଜଳ ଆଖି ଖୋଜି ପାଇନାହିଁ । ସହରର ସଂକୁଚିତ ଆକାଶ, ଦୁଷ୍ପ୍ରାପ୍ୟ ଦିଗ୍ବଳୟ, ପର୍ଦ୍ଦାଢଙ୍କା ଝରକା କବାଟ, ଚାରିକାନ୍ଥର ମଣିଷ ଇତ୍ୟାଦକୁ ଦେଖି ନିଃସଙ୍ଗ, ଶୂନ୍ୟ ମନେ କରିଛି। ଗାଁର ଆବେଗିକ ଜୀବନର ମହିମାଦୀପ୍ତ ମୁହଁଟି ଆଖିଆଗରେ ବାରମ୍ବାର ଭାସିଉଠିଛି । ବାପାଙ୍କ ଆଖି, ମା'ଙ୍କ ଆବେମୟ ଚିଠି ଉଙ୍କିମାରିଛି ମନରେ । ସହରୀ ଜୀବନର ଅଶାନ୍ତି, ବିକ୍ଷୁବ୍ଧ ବାତାବରଣ, କୃତ୍ରିମ ଜୀବନଚର୍ଯ୍ୟା ଭିତରେ ଶ୍ୱାସରୁଦ୍ଧ ହୋଇଉଠିଛି ସୁମିତ୍ରା। ତା'ର ଆଶଙ୍କା ମାନସିକତ ଅସ୍ଥିରତାରେ ରୂପାନ୍ତରିତ ହୋଇଛି ।

ଏହି ସୂକ୍ଷ୍ମ ମାନସିକତାକୁ ଗାଳ୍ପିକ ଏହି ଗଳ୍ପରେ ରୂପାନ୍ତରିଚ କରିଛନ୍ତି – "ତା'ର ମନ ପୁଣିଥରେ କରୁଣତାରେ ଆଚ୍ଛନ୍ନ ହୋଇଗଲା, କଣ୍ଠ ପୁଣିଥରେ କୋହର ବାଷ୍ପାକୁଳ ହୋଇଗଲା ତାକୁ ଜଣାଗଲା । ତା' ଅଜାଣତରେ ତାକୁ ଫାଶୀ ଆଦେଶ ଦିଆଯାଇଥିଲା । ଦଉଡ଼ିଟି କାଟିସାରିବା ପରେ ତାକୁ କୁହାଗଲା, ଯେ ସେ ନିର୍ଦୋଷ ଓ ମୁକ୍ତ ।"

ସହରର ଘର ଏକ ପିଞ୍ଜରାଟିଏ । ଗାଳ୍ପିକ ଲେଖିଛନ୍ତି – "କ'ଣ ତେବେ ଏଇଟା? ଘର, ନା ପିଞ୍ଜରା? ଏଇଭଳି ଜୀବନ ପାଇଁ ସେ ଏତେ ଉତ୍ତେଜିତ ଥିଲା? ଏତେ ଅନୁସନ୍ଧିତ୍ସୁ ଥିଲା? ନିବୁଜ ଘରର ରୁଦ୍ଧ ପବନ ଭିତରେ ସେ ଆଉ କେତେ ଶିଥିଳ ଗତିହୀନ ହୋଇ ଏଇମିତି ପଡ଼ିରହିବ? ଆକାଶର ସଂଜ୍ଞା କ'ଣ ଏ ଛୋଟ ଫ୍ଲାଟର ଛାତ? ଚାଳିଶ ୱାଟର ବଲବ୍ କ'ଣ ଜହ୍ନ? ପବନ କ'ଣ ସୁଇଚ ଟିପିବାକ୍ଷଣି ବୁଲୁଥିବା ଫଙ୍କାକୁ ବୁଝାଏ ।"(୯) ସୁମିତ୍ରାର ଅବଚେତନ ମନର ଅନ୍ଧାରୀ ଜଗତର ନିଃସଙ୍ଗତା ଉନ୍ମୋଚିତ ହୋଇଛି । ତା'ର ଆଶା ଓ ଆକାଂକ୍ଷା ଭିତରେ ସେ ନିଃସଙ୍ଗତା ଅନୁଭବ କରିଛି । ନିଃସଙ୍ଗତା ଦ୍ୱାରା ପୀଡ଼ିତ ହୋଇଛି ।

'ସର୍ବଶେଷ ଚିଠା' ଗଳ୍ପରେ ସାମ୍ପ୍ରତିକ ସମଜାର ଜୀବନଚିତ୍ର ଉଦ୍ଘାଟିତ । ଏହି ଗଳ୍ପର ନାୟକ ମୋହନର ବିଷର୍ଣ୍ଣତା, ନିଃସଙ୍ଗତାକୁ ଉନ୍ମୋଚିତ କରାଯାଇଛି । ପୃଥିବୀର ବିପୁଳ କୋଳାହଳ ସତ୍ତ୍ୱେ ମଣିଷ କେତେ ନିଃସଙ୍ଗତାର ଦୟନୀୟ ଚିତ୍ର ପ୍ରଦାନ କରାଯାଇଛି ।

"ମୋହନ ଫେରିଆସିଲା। କେଉଁଠିକି ଯିବ ସେ? କେଉଁଠି ଏତେଗୁଡ଼ିଏ ରୁଦ୍ଧ ଆବେଗ ଖଲାସ କରି ନିଶ୍ଚିନ୍ତ ହେବ? କିଏ ବୁଝିବ ତାକୁ? କାହାକୁ ଆପଣାର କରିବ? ନିଜ ପାଦଶବ୍ଦ ତାକୁ ଶଙ୍କିତ କରୁଥିଲା ବେଳେବେଳେ । ତା' ସାଙ୍ଗରେ କେବଳ ନିଜର ପାଦଶବ୍ଦ । ୟା' ପୂର୍ବରୁ ମୋହନ କେବେହେଲେ ଏତେ ନିଃସଙ୍ଗ ଓ କରୁଣ ଅନୁଭବ କରିନଥିଲା । ସହର ଭିତରେ ଚାଲିଥିବା ଚଳପ୍ରଚଳ, କିଣାବିକା, ପାଟିତୁଣ୍ଡ ଜଣାପଡୁଥିଲା ଅର୍ଥହୀନ ଓ ବିରକ୍ତିକର ।"(୧୦)

ମଣିଷ ଖୋଜେ ଆବେଗିକ ସମ୍ପର୍କ । ହୃଦୟର ନିବିଡ଼ତା କାହା ସହିତ ମହକିତ ହେଉ ଏହା ସେ ଚାହେଁ । ସେ ଯେକେହି ହେଉନା କାହିଁକି? ଆବେଗିକ ହୃଦୟର ନିବିଡ଼ ସମ୍ପର୍କ ସେ ସ୍ଥାପନ କରିବାକୁ ଚାହେଁ । ଯେତେବେଳେ ସେ ସମ୍ପର୍କ ପ୍ରଶ୍ନବାଚୀ ହୋଇଉଠେ, ସେତେବେଳେ ଜୀବନ ନିଃସଙ୍ଗ, ରିକ୍ତ, ଏକାକୀ, ଅସହାୟ ହୋଇପଡ଼େ । "ତିରିଶ ବର୍ଷ ଧରି ବସିଆସିଥିବା ଏବଂ କୌଣସି କାରଣ ନ ଦେଇ ହଜିଯାଇଥିବା ଲୋକଟିର ହାଲ ହରକତ ଜାଣିବାପାଇଁ କାହାର ଫୁର୍ସତ ନ ଥିଲା । ଖଟକୋଣରେ ଘଟିଥିବା କାହାରି ଦୃଷ୍ଟି ଆକର୍ଷଣ କରିପାରିନଥିଲା ।"(୧୧)

'ଗ୍ୟାରେଜ' ଗଳ୍ପରେ ନିଃସଙ୍ଗତାର ସାଙ୍କେତିକ ଅର୍ଥ ପ୍ରତିପାଦିତ । ଗାଡ଼ି ପୁରୁଣ, ରୁଗ୍ଣ, ବୃଦ୍ଧ, ଦୁର୍ଘଟଣାଗ୍ରସ୍ତ, ଅକର୍ମଣ୍ୟ ହେଲେ ସେ ଗ୍ୟାରେଜକୁ । ପୁଣି ଗାଡ଼ି ଏପରି ଅବସ୍ଥାରେ ପହଞ୍ଚେ ସେତେବେଳେ ଆଉ ସଜାଡ଼ିବା ମଧ ଦରକାର ପଡ଼େନାହିଁ । କବାଡ଼ିଆକୁ ହରବରରେ ବିକା ହୋଇଯାଏ । ଅଲୋଡ଼ା ହୋଇଯାଏ ଗାଡ଼ି । ଅଲୋଡ଼ା ହୋଇଯାଏ ତା'ର ଆବଶ୍ୟକତା। ଠିକ୍ ସେହିପରି ଯୌବନ ଚାଲିଗଲା ପରେ ମଣିଷର କାର୍ଯ୍ୟବକ୍ଷତା କମିଯାଏ । ମଣିଷ ଅପରାହ୍ନରେ ପହଞ୍ଚିଯାଇଥିବାରୁ ରୁଗ୍‌ଣ, ଅଥର୍ବ ଓ ସ୍ଥାଣୁ ପାଲଟିଯାଏ । ସେ ହୋଇଯାଏ ଅଲୋଡ଼ା, ଅପାଂକ୍ତେୟ, ନିଃସଙ୍ଗ ଓ ଅସହାୟ ।

'ଗ୍ୟାରେଜ' ଗଳ୍ପର ନାୟକ ପ୍ରମୋଦବାବୁ ଦୁର୍ଘଟଣାବଶତଃ ଗୋଡ଼ରେ ଆଘାତ ହେତୁ ଶଯ୍ୟାଶାୟୀ ହୋଇପଡ଼େ । ତା'ର ଅନୁପସ୍ଥିତି ହେତୁ ଗ୍ୟାରେଜ ଶ୍ରୀହୀନ ହୋଇପଡ଼ିଛି । ଅବଶେଷରେ ତାକୁ ବିକ୍ରିକରି ଦିଆଯାଇଛି । ଅଭାବ, ଅସଫଳତା, ଗ୍ଳାନିରେ ମାନସିକ ଅସ୍ଥିରତା ଆସିଛି । ଉଦାସ ହୋଇଉଠିଛି ସେ ଓ ନିଃସଙ୍ଗ ହୋଇଯାଇଛି ତା'ର ଜୀବନ । ସୀତାର ସ୍ୱର ସହ ଉଦାସ ଜୀବନରେ ଆଣିଛି ନୂତନ ସମ୍ଭାବନା। ମାତ୍ର ସୀତାରର ଉଦାସ ସ୍ୱର ଭିତରେ ଲୁଚି ରହିଥାଏ ଅନନ୍ୟ ଶକ୍ତିଟିଏ, ଗୋଟାଏ ଦୃଢ଼ତା, ଗୋଟାଏ ପ୍ରତ୍ୟୟ । ଏଇ ଶକ୍ତିଟି ଉଦାସ ସ୍ୱରର ଯଥାର୍ଥତା ପ୍ରତିପାଦନ କରେ ଅଲୌକିକ ଭାଷାରେ । ତୁମେ ଯଦି ଥରେ ସେ ସ୍ୱର ଶୁଣିବ, ତେବେ ଭାବିବ ଯେ, ଏ ସଂସାରରେ ଉଦାସ ଓ ଦୁଃଖି ହୋଇଯିବା ସ୍ୱାଭାବିକ । ଅନ୍ୟସବୁ ଅଭିଜ୍ଞତା ଗୋଟାଏ ଶଠତା ।"(୧୨)

'ସର୍ବସାଧାରଣଙ୍କ ପୃଥିବୀ' ଗଳ୍ପରେ ଅସହାୟତାର ସ୍ୱର ଚିତ୍ରିତ। ଗଳ୍ପର ନାୟକ ଜଗୁ ଜୀବନରେ ଏହି ଅସହାୟତା ଦେଖାଦେଇଛି । କୁଷ୍ଠରୋଗରେ ଆକ୍ରାନ୍ତ ହେବାପରେ ସେ ନିଜ ପତ୍ନୀ ପାଖରୁ ଦୂରେଇ ଯାଇଛି । ତେବେ ଛଅବର୍ଷ ପରେ ନିଜ ପତ୍ନୀ ସୁମିକୁ ଦେଖିବାକୁ ସେ ଯେତେବେଳେ ଇଚ୍ଛା କରିଛି, ସେତେବେଳେ ସେ ଦେଖିଛି ସୁମି ଗଣଭୋଗ୍ୟା ପାଲଟିଯାଇଛି । ଓଲଟପାଲଟ ହୋଇଯାଇଛି ସମସ୍ତ କଳ୍ପନା । ପ୍ରତିବଦଳରେ ଜଗୁ ତିରସ୍କୃତ ହୋଇଛି । ମାନସିକ ଯନ୍ତ୍ରଣା ଭୋଗ କରିଛି ଜଗୁ। ଲାଞ୍ଛିତ ହୋଇଛି । ଅସହାୟ ହୋଇପଡ଼ିଛି ଜଗୁ ।

'ଶେଷ ଚିଠି'ରେ ମଳୟବାବୁ ପରିତ୍ୟକ୍ତ ଚିଠି ବାକ୍ସ ଭିତରୁ ଗୋଟିଏ ଚିଠି ଆବିଷ୍କାର କରନ୍ତି ଏବଂ ଚିଠିଟି ଖୋଲି ପଢ଼ନ୍ତି । ଚିଠିଟି ଅତି ସାଧାରଣ ଥିଲେ ବି ତାହା ଥିଲା ମାର୍ମିକ । ଜଣେ ଅସହାୟ ବୁଢ଼ା ବାପାର ଚିଠି ।

'ଶେଷ' ଗଳ୍ପରେ କଇଁଛଟିଏ ପ୍ରତୀକାତ୍ମକ ଭାବରେ ଚିତ୍ରିତ। ଏହା ଜୀବନ ସହିତ ବଡ଼ ବିଚିତ୍ର ଭାବରେ ସମ୍ପର୍କିତ । ଜୀବନର ଅସହାୟତା ଓ ବିଷାଦମୟ ଦିଗଟିକୁ ଏହି ଗଳ୍ପରେ ଦେଖାଇ ଦିଆଯାଇଛି । ଅସଫଳତାର ନୈରାଶ୍ୟବୋଧ ହେଉଛି ଜୀବନର ଅନନ୍ତ ଶେଷ । କାହାଣୀଟିର ଶେଷ

ପର୍ଯ୍ୟାୟରେ ସମୁଦ୍ରକୁ ଏକ ନୈର୍ବ୍ୟକ୍ତିକ ସତ୍ତା ଭାବରେ ନୁହେଁ ବରଂ ଏକ ସାକାର ଚେତନା ଭାବରେ ମୂର୍ତ୍ତିମନ୍ତ କରିଛନ୍ତି ଲେଖକ । "ବୋଧହୁଏ କଇଁଚ ଓ ସମୁଦ୍ରର ମିଳିତ ବ୍ୟାକୁଳତା, ଅସଫଳ ଚେଷ୍ଟା ଆହୁରି ମର୍ମସ୍ପର୍ଶୀ ଓ ଅସହ୍ୟ ହୋଇପଡ଼ିଥିଲା । ଏଇଥିପାଇଁ ଏହାକୁ ସମସ୍ତଙ୍କ ଦୃଷ୍ଟିର ଅନ୍ତରାଳକୁ ନେଇଯିବା ସକାଶେ ସ୍ୱର୍ଗ ଓ ମର୍ତ୍ତ୍ୟ ମଧ୍ୟରେ ଘନୀଭୂତ ହେଉଥିଲା ଅନନ୍ତ ଅନ୍ଧକାର ।"(୧୩)

'ଟେବୁଲ ଘଣ୍ଟା' ଗଳ୍ପଟିରେ ବ୍ୟକ୍ତିର ଅସହାୟତାର ଚିତ୍ର ଚିତ୍ରିତ। ଗୋଟିଏ ଟେବୁଲ ଘଣ୍ଟା ଥରେ ଅକାମୀ ହୋଇଗଲେ ଯେମିତି ତା'ର ଆବଶ୍ୟକତା ଅପାଂକ୍ତେୟ, ସେହିପରି ଶ୍ରୀକାନ୍ତର ଜୀବନ ରୁଗ୍ଣ, ବିଷର୍ଣ୍ଣ ଓ ବିଷାଦଗ୍ରସ୍ତ ହୋଇଯାଇଛି ଅଭାବୀ ସଂସାର ଭିତରେ । ଭଙ୍ଗାଘର, ଭଙ୍ଗାଟ୍ରଙ୍କ, ଜରାଜୀର୍ଣ୍ଣ ଆଟୁଘର ସବୁ ଦାରିଦ୍ର୍ୟର ଚିତ୍ରକଳ୍ପ । 'ନିଃସଙ୍ଗ ବର୍ତ୍ତମାନ' ଗଳ୍ପଟି କରୁଣ ରସାଶ୍ରିତ । ଗଳ୍ପଟିରେ ନୀରବ ହା ହାକାର ଉଚ୍ଚାରିତ ହୋଇଛି ।

'ନିରୁଦ୍ଦିଷ୍ଟ' ଗଳ୍ପର ନାୟକ କେଦାର ମହାରଣା ଏକ ନିଃସଙ୍ଗ ମଣିଷ । ସେ ବିପତ୍ନୀକ । ତା' ଜୀବନରେ ଆସିଥିବା ଶୂନ୍ୟତା ଓ ନିଃସଙ୍ଗତା ତା'ର ସୃଜନଶୀଳତାକୁ କିପରି ନଷ୍ଟ କରିଦେଇଛି ଗାଳ୍ପିକ ପ୍ରକାଶ କରିଛନ୍ତି ।

'ପାଣ୍ଡୁଲିପି' ଗଳ୍ପରେ ନିଜକୁ ସମ୍ପୂର୍ଣ୍ଣ ଅଦରକାରୀ, ଅବାଞ୍ଛିତ ଓ ଅପାଙ୍କ୍ତେୟ ମନେ କରିଥିବା ହିମାଂଶୁ ବାବୁଙ୍କ ମନସ୍ତାତ୍ତ୍ୱିକ ଚିତ୍ର ଉପସ୍ଥାପିତ ହୋଇଛି । ବିଗତ ଜୀବନର ଅନୁଭୂତି ସହିତ ବର୍ତ୍ତମାନକୁ ମାନିବାର ଚେଷ୍ଟା ଏକ ଅପ୍ରକାଶିତ ପାଣ୍ଡୁଲିପି ପରି ମନେ ହୋଇଛି। ହିଂମାଶୁବାବୁଙ୍କ ବକ୍ତବ୍ୟ ମାଧ୍ୟମରେ ଜୀବନର ନୈରାଶ୍ୟମୟ ଦିଗଟି ଉନ୍ମୋଚିତ ହୋଇଛି। ଗଳ୍ପଟିରେ ଲେଖକ ହିମାଂଶୁ ଓ ସନାତନ ଚରିତ୍ରକୁ ଅବତାରଣା କରିଛନ୍ତି। ଦୁର୍ବିସହ ବାର୍ଦ୍ଧକ୍ୟ ଜୀବନକୁ ନେଇ ବଞ୍ଚୁଥିବା ସନାତନଙ୍କ ବ୍ୟକ୍ତିତ୍ୱ ବୋହୂର ଲାଞ୍ଛନା ଓ ତିରସ୍କାରରେ ମ୍ରିୟମାଣ ହୋଇଉଠିଛି । 'ବିଧାତା' ଗଳ୍ପରେ ପ୍ରକାଶର ନିଃସଙ୍ଗ ଜୀବନ ପ୍ରକାଶ ପାଇଛି। ନିଜ ସାନଭାଇ ପ୍ରମୋଦ ଦ୍ୱାରା ଲାଞ୍ଛିତ ରୁଦ୍ଧ କୋଠାରୀରେ ନିର୍ବାସିତ ଭାବରେ ନିଃସଙ୍ଗ ଜୀବନ ବିତାଇ ସେ କେବଳ ଶାରୀରିକ ଦୃଷ୍ଟିରୁ ଅସୁସ୍ଥ ହୋଇନାହିଁ ବରଂ ମାନସିକ ନିଃସଙ୍ଗତା ଭୋଗ କରିଛି । ସେ ଜୀବନକୁ ନଗଣ୍ୟ, ତୁଚ୍ଛ ଓ ଅଦରକାରୀ ମନେ କରିଛି । ମା'ର ବ୍ୟାକୁଳତା ଓ ବାପାଙ୍କର ଅସହାୟତାକୁ ବୁଝିବା ସାମର୍ଥ୍ୟ ସେ ହରାଇ ବସିଛି। ସେ ନିର୍ବାକ ଓ ନିଷ୍ପନ୍ଦ ହୋଇ ପଡ଼ିରହିଛି । ବିଧାତାର ଅଲଙ୍ଘନୀୟ ନିର୍ଦ୍ଦେଶକୁ ଭୋଗ କରିବା ଛଡ଼ା ଆଉ ଉପାୟ ନାହିଁ । ସେହି ନିର୍ଦ୍ଦେଶକୁ ବିଧାତାଙ୍କର ଅଲଙ୍ଘନୀୟ ବୋଲି ଗ୍ରହଣ କରିବାକୁ ବାଧ୍ୟ ହେବାକୁ ପଡ଼ିଛି ।

"ପ୍ରକାଶ ଆଉ କଥା କହୁ ନ ଥିଲା। ଚିତ୍କାର କରୁଥିଲା। ଅଭିଯୁକ୍ତ ଆସାମୀ ଭଳି ମିଷ୍ଟର ଦାସ ବସି ରହିଥିଲେ ଆଗଭଳି। ତାଙ୍କ ପାଟି ଆଁ ହୋଇଯାଇଥିଲା ଅବିଶ୍ୱାସ ଓ ବିସ୍ମୟକର । ଘରର ସବୁ ଲୋକ ଜମିଯାଇଥିଲେ ବାରଣ୍ଡାରେ। ମାତ୍ର ସେତେବେଳେ ପ୍ରକାଶ ସମ୍ଭବତଃ ନିଜର ଦୁର୍ବଳ ଦେହରେ ଧରି ରଖିପାରୁନଥିଲା। ଏତେ କ୍ରୋଧ, ନିଜ ଜନ୍ମର କୈଫିୟତ, ନିଜ ସ୍ଥିତିର ଯଥାର୍ଥତା କ'ଣ, ତାହା ଜାଣିବାର ବିପୁଳ ଜିଜ୍ଞାସା । ସେ ପୁଣି ଚିତ୍କାର କଲା – ମୁଁ କିଏ? ଜବାବ୍ ଦିଅ, କିଏ ମୁଁ? ମତେ ତୁମେ ବଞ୍ଚେଇ ରଖିଛ କାହିଁକି?"(୧୪)

'ଆହୁଲା' ଗଳ୍ପରେ ପାପବୋଧ ମଣିଷକୁ ନିଃସଙ୍ଗତା ଆଣିଦେଇଛି । ନିଜେ ନିଜର କୃତକର୍ମ ପାଇଁ ଅନୁତପ୍ତ ହେବା ଛଡ଼ା ଆଉ ଭିନ୍ନି ଉପାୟ ନାହିଁ । ପାପବୋଧର ଗୋପୀ ହୁଏତ ସନିଆର ଅଶରୀରୀ ଉପସ୍ଥିତିକୁ ଅନୁଭବ କରିଛି ଓ ନିଃସଙ୍ଗ ଗୋପୀ ସହିତ ଆତ୍ମାଟିଏ ଭଳି ଛଟପଟ ହୋଇଛି । ନିଜକୁ ଉଦ୍ଧାର କରିବାର ସମସ୍ତ ସମ୍ଭାବନା ଲୋପ ପାଇଯାଇଛି । ପରିବ୍ୟାପ୍ତ ଓ ଧ୍ୱଂସାତ୍ମକ ସାମୁଦ୍ରିକ ଝଡ଼ ଅପେକ୍ଷା ପାପବୋଧ ତାକୁ ଅଧିକ ଭୟଭୀତ ଓ ବିପନ୍ନ କରିଦେଇଛି ।

'ଅସ୍ଥାୟୀ ଠିକଣା' ଗଳ୍ପ ସଂକଳନରେ ସଂକଳିତ 'ଆଗ୍ନେୟଗିରି' ଗଳ୍ପରେ ଧନୁ ମନର ଭାବାବେଗ ଅତି ସୁନ୍ଦର ଭାବରେ ଚିତ୍ରଣ କରାଯାଇଛି । ଧନୁ ଓ ବାସନ୍ତୀର ଏକ ସୁସ୍ଥ ପାରିବାରିକ ଜୀବନର ଚିତ୍ର ଉପସ୍ଥାପିତ ହୋଇଛି । ହେଲେ ଏକ ନୀରବ ଶୂନ୍ୟତା ସେମାନଙ୍କୁ କାବୁ କରି ରଖିଥିଲା। ସେମାନେ ନିଃସନ୍ତାନ ଥିଲେ। ନିଃସନ୍ତାନ ଧନୁ ନିର୍ଲିପ୍ତ, ଅନାସକ୍ତ ଥିଲା ଜୀବନ ପ୍ରତି। ବାସନ୍ତୀ ମଧ୍ୟ ଏଇ ଅଭାବବୋଧରେ ସମ୍ପୂର୍ଣ୍ଣ କବଳିତ।

"ଧନୁକୁ କିଛି ଆଶ୍ୱାସନା ଦେଇପାରିନଥିଲା। ତା' ଆଖିରେ ମଣିଷ ଜଣକ ଫୋପାଡ଼ି ଦିଆଯାଇଥିବା ଗୋଟିଏ ଜଖମ ଖେଳନା ଭଳି ବିଦୀର୍ଣ୍ଣ ହତଶ୍ରୀ ହୋଇପଡୁଛି । ମାଂସପେଶୀ ହଜିଯାଇଛି କୁଆଡ଼େ । ଚମଡ଼ା ଦେଖାଯାଉଛି ଲୋଚାକୋଚା । ଧଇଁସଇଁ ହେଉଛି ସବୁବେଳେ । ଯନ୍ତ୍ରଣା ଅସହ୍ୟ ହେଲେ ଛାଟିପିଟି ହେଉଛି । ତାକୁ ଛାତି ଭିତରେ ଜାକି ଧରିଲେ ତା'ର ଗୋଡ଼ହାତ ମୁଣ୍ଡ ଆଉଁସି ଦେଲେ ମଧ୍ୟ ସେ ଥୟ ହେଉନାହିଁ । ସବୁଠୁ ବଡ଼କଥା ହେଲା ଧନୁର ଉଦ୍‌ବିଗ୍ନତା, ବ୍ୟାକୁଳତା, ଦରଦ ଓ ସେବା ହାରିଯାଉଚି, ଅଦରକାରୀ ହୋଇପଡୁଛି ।"(୧୫)

'ଗୋପପୁର' ଗଳ୍ପ ସଂକଳନର 'ଭୂମିକା' ଗଳ୍ପଟି ହୃଦୟସ୍ପର୍ଶୀ, କରୁଣ ଓ ମାର୍ମିକ । ସାମ୍ପ୍ରତିକ ଜୀବନଚର୍ଯ୍ୟାରେ ଯେଉଁ ନିଃସଙ୍ଗତା ଦେଖାଦେଇଛି ତାହାର ଏକ ନିଷ୍କପଟ ଅଭିବ୍ୟକ୍ତି ଘଟିଛି ଗଳ୍ପରେ । ଏହି ଗଳ୍ପରେ ଶ୍ରୀକାନ୍ତ ଜଣେ ବୟସ୍କ ବ୍ୟକ୍ତି। ଆଖି ଅପରେସନ ପାଇଁ ହସ୍ପିଟାଲ୍‌ରେ ଆଡ଼ମିଟ୍ ହୋଇଛନ୍ତି । ଦୀର୍ଘ ଷୋହଳ ବର୍ଷ ପ୍ରବାସରେ ରହୁଥିବା ପୁଅ ସୁବୋଧ ପାଇଁ ତାଙ୍କ ଭିତରର ଆକୁଳତା, ଆବେଗ ଓ କାରୁଣ୍ୟ ସମଗ୍ର ଗଳ୍ପଟିକୁ ପ୍ରଭାବିତ କରିଛି । ଜଣେ ଶିଳ୍ପୀର ସ୍ଥାନ, କାଳ, ପାତ୍ର ନିର୍ବିଶେଷରେ ମଣିଷ ପ୍ରାଣର କଥା ଓ ବେଦନାକୁ ଗାଳ୍ପିକ ଚିତ୍ରଣ କରିଛନ୍ତି । ନିଃସଙ୍ଗତା, ଶୂନ୍ୟତାର ସର୍ବଗ୍ରାସୀ କ୍ଷୁଧା ଭିତରେ ପୋଡ଼ି ହୋଇପଡ଼ିଛି ଅତୀତର ସମସ୍ତ ମଧୁର ସ୍ମୃତି, ଦମ୍ଭିଲାପଣ, ପ୍ରାପ୍ତି ଓ ପ୍ରାଚୁର୍ଯ୍ୟର ବୃଥା ଅହମିକା ଓ ଅର୍ଥର ଅମୋଘ ଶକ୍ତି । ଯେଉଁ ଆଜିର ସଭ୍ୟତାର ଏକାନ୍ତ ଆପଣାର ବିଷୟ ହେଉଛି ଶୂନ୍ୟତା ଓ ନିଃସଙ୍ଗତା, ଯାହା ଜୀବନକୁ ବିବର୍ଣ୍ଣ କରିଦିଏ ଓ ବଞ୍ଚିବାପାଇଁ ପଥରୁଦ୍ଧ କରେ ।

ଶ୍ରୀକାନ୍ତର ଶୂନ୍ୟତା ସତେକି ସଞ୍ଚରିତ ହୋଇଛି ସମଗ୍ର ସତ୍ତାକୁ। ସୁବୋଧ ନାମରେ ଅଭିନୟ କରୁଥିବା ବ୍ୟକ୍ତିଟିକୁ ଧରି ଶ୍ରୀକାନ୍ତ ପ୍ରାଣର ବ୍ୟାକୁଳତାରେ କହିଛି – "ତୁ ସୁବୋଧ ନା? ଆରେ ତୁ, ମୋ ସୁବୋଧ ନା? ନାଇଁ ବୋଲି କହନା। କହିଦେ ତୁ, ସୁବୋଧ ବୋଲି । କହିଦେ ଥରେ। ଧନ୍ୟ ହୋଇଯାଉ ଅନ୍ତତଃ ଏ କାନ ଦୁଇଟା । ଏ କାନ ଏଯାଏଁ କୌଣସି କଥା ଶୁଣି ନାହାନ୍ତିରେ ବାବୁ। ପନ୍ଦର ଷୋହଳ ବର୍ଷ ହେଲା ତୁ ସିଆଡ଼େ ପଳାଇ ଗଲାପରେ, ମୁଁ କିଛି ଶୁଣିନାଇଁ, ମନ୍ଦିରର ଘଣ୍ଟ, ପଡ଼ିଶା ସ୍ତ୍ରୀଲୋକର ହୁଳହୁଳି, ଗାଈର ହମ୍ବାରଡ଼ି, ମଟର ହର୍ଣ୍ଣ । ମୋ ନିଜ ଖୁଁ ଖୁଁ କାଶ, ଉଡ଼ାଜାହାଜର ଆବାଜ୍ । ନା, ମୁଁ କିଛି ଶୁଣିନାଇଁ ଏଯାଏଁ। ଆରେ ତୁ ସୁବୋଧ ବୋଲି କହିବେ । ଆଉ କିଛି ଶୁଣିବା ମୋର ଦରକାର ନାଇଁ । ଆଉ ସବୁ ଶବ୍ଦ ଶୁଣୁ ଥାଆନ୍ତୁ ଅନ୍ୟମାନେ, ଏ ଧରିତ୍ରୀ, ଏ ଆକାଶ ।"(୧୬)

 ISSN: 2456-9194, Vol. II, Issue. II, Sept-2018

‘ସ୍ୱପ୍ନ ପାଇଁ ଘର’ ଗଳ୍ପରେ ଶୂନ୍ୟତାବୋଧ ଗଳ୍ପର ଅନ୍ତଃକରଣକୁ ନିବିଡ଼ ଭାବରେ ସ୍ପର୍ଶ କରିଛି । ଅସହାୟ ମଣିଷର ଆତ୍ମାର ହା ହାକାର ଗଳ୍ପକୁ ଋଦ୍ଧିମନ୍ତ କରିଛି। ପ୍ରତାରଣା ଓ ପ୍ରବଞ୍ଚନା ଆତ୍ମାର ସୌକୁମାର୍ଯ୍ୟକୁ କିପରି ଖଣ୍ଡ ବିଖଣ୍ଡିତ କରିଛି ତା’ର ଚମତ୍କାର ଆଲେଖ୍ୟ ଉପସ୍ଥାପିତ ହୋଇଛି ।

କ୍ଷୁଦ୍ରଗଳ୍ପରେ ନିଃସଙ୍ଗତାର ଅନୁଭବ ତୀବ୍ର ବିଶେଷକରି ପାଶ୍ଚାତ୍ୟ ସାହିତ୍ୟରେ କାଫକା, କାମ୍ୟୁ ଓ ସାର୍ତ୍ତ୍ରେଙ୍କ ଦୃଷ୍ଟିରେ ଏହାର ପୀକ୍ଷା ଜୀବନ୍ତ ଓ କଳାଧର୍ମୀ । ଏକପକ୍ଷରେ ବାହ୍ୟଜଗତର ତାଗିଦ୍ ଏବଂ ଅନ୍ୟ ପକ୍ଷରେ ବ୍ୟକ୍ତିଗତ ଜୀବନର କାଲୁଷତା । କାଫକାଙ୍କ ‘ଦିବରେ’ ଗଳ୍ପରେ ବାହାରେ କୋଳାହଳ କିନ୍ତୁ ଜୀବନଟିଏ ଗାତ ଖୋଳି ତା’ ଭିତରେ ବାସକରେ । ସମାଜ ଚାହୁଁଛି ଜୀବନକୁ କାବୁ କରିନେବ ବୋଲି, ନିଜ ଆୟତ୍ତ ଭିତରେ ରଖି ନିଜ ସହିତ ଅକ୍ଳେଶରେ ମିଶେଇଦେବ ବୋଲି, ନିଜ ଆୟତ୍ତ ଭିତରେ ବୋଲି । କିନ୍ତୁ, ଏକାକୀ ବଞ୍ଚୁଥିବା ଜୀବନଟିର ସେଠାରୁ ପଳେଇଯିବାକୁ ଇଚ୍ଛା। ମାତ୍ର, କେଉଁଠିକୁ ଯିବ? ସବୁ ଅନିଶ୍ଚିତତା ଭିତରେ ସେ ଆପଣା ପୃଥିବୀକୁ ଗଢ଼େ । ଆପଣାର ଗାତଟିକୁ ଆପଣା ଶ୍ରମରେ ତିଆରି କରେ । ଗାତକୁ ଦୀର୍ଘ କରେ – ମାଟି ଖୋଳି ଖୋଳି ଯାଏ, କାଢ଼ି କାଢ଼ି ଯାଏ ।

ଆଲବର୍ଟ କାମ୍ୟୁଙ୍କ କ୍ଷୁଦ୍ରଗଳ୍ପରେ ଏ ନିଃସଙ୍ଗତାର ଅନୁଭବ ଆହୁରି ସ୍ପଷ୍ଟ । ତାଙ୍କର ‘ଦି ସାଇଲେଣ୍ଟ ମେନ’ (ଞଷର ଝସକ୍ଷରଭତ୍ସ ଗରଭ) ଗଳ୍ପରେ ‘ଭାରସ୍’ ଅନୁଭବ କରିଛି ତାକୁ ଘେରି ରହିଥିବା ପୃଥିବୀ ଓ ତା’ର ଅସଂଖ୍ୟ ଛାଇ ନୀରବତାକୁ କେବେହେଲେ ମୁକ୍ତି ଦେବନାହିଁ । ନିର୍ଜନ ସମୁଦ୍ର କୂଳରେ ଠିଆହୋଇ ସେ ଭାବେ ସେ ପୁଣି ଥରେ ଯଦି ଟୋକ ହୋଇଯାନ୍ତା, ତା’ହେଲେ ଡଙ୍ଗାରେ ବସି ସେ ସମୁଦ୍ର ଆରପଟୁ ଚାଲିଯାଆନ୍ତା । ‘ଭାରସ୍’ର ଇଚ୍ଛା ନିର୍ବାସନ ଭୋଗିବା । ଏହି ଗଳ୍ପର ଚରିତ୍ରମାନେ ସେହି ନୀରବ ଜାଗାଟିଏ ଖୋଜିଛନ୍ତି ।

ଓଡ଼ିଆ କ୍ଷୁଦ୍ରଗଳ୍ପରେ ଏହି ନିଃସଙ୍ଗତାର ଅନୁଭବ ମଧ୍ୟ ଅତିଶୟ ଆବେଗଧର୍ମୀ। ମନୋଜ ଦାସଙ୍କ ‘ବିଜନପୁରରେ କେତୋଟି ସନ୍ଧ୍ୟା’ ଗଳ୍ପରେ ହେଡ୍ ମିଷ୍ଟ୍ରେଙ୍କର ନିଃସଙ୍ଗତାର ପୃଥିବୀ, ଆପଣା ନିର୍ଜନ ଅନୁଭବରେ ବେଶ୍ କିଛି କରୁଣ। ‘ଭୂତକୋଠିରେ ଏକ ରାତି’ ଗଳ୍ପରୁ ମଧ୍ୟ ସେହି ନିଃସଙ୍ଗତାର ସ୍ୱର ମର୍ମଭେଦୀ । ଶାନ୍ତନୁ ଆଚାର୍ଯ୍ୟଙ୍କ ‘ହୃଦକୋଲପ’ ଗଳ୍ପରେ ଆଧୁନିକ ଶିକ୍ଷିତ ମଣିଷଟିର ସଂଶୟ ଓ ବିଚ୍ଛିନ୍ନତାବୋଧ ଆମର ମୂଲ୍ୟବୋଧ ପ୍ରତି ଏକ ଆହ୍ୱାନ ସୃଷ୍ଟି କରିଛି । ଡ. କୃଷ୍ଣପ୍ରସାଦ ମିଶ୍ରଙ୍କ ‘ଯଶୋଦାର ଶୋକ’ ଗଳ୍ପଟି ସେହିପରି ବିଚ୍ଛିନ୍ନତା ଓ ନିଃସଙ୍ଗତାର ଅନୁଭବକୁ ସଫଳ ରୂପାୟନ ଦେଇଛନ୍ତି । ସେହିପରି ରାମଚନ୍ଦ୍ର ବେହେରାଙ୍କ ଗଳ୍ପରେ ନିଃସଙ୍ଗତା ଓ ଅସହାୟତାର ସ୍ୱର ଜୀବନ୍ତ ।

“ନିଃସଙ୍ଗ ମଣିଷର ଏକ ସାବଲୀଳ ସ୍ୱର ଓଡ଼ିଆ କ୍ଷୁଦ୍ରଗଳ୍ପରେ ଗାଳ୍ପିକମାନେ ନିର୍ଜନତାର ଏକ କୋମଳ ମୂର୍ଚ୍ଛନା ସୃଷ୍ଟି କରିଛନ୍ତି । ଆଜିର ମଣିଷ ତା’ର ବ୍ୟକ୍ତିଗତ ପରିସର ଓ ତହିଁରେ ଅନ୍ତର୍ନିହିତ ଜ୍ୱାଳା ଓ ଯନ୍ତ୍ରଣା ମଧ୍ୟରେ ଅହରହ ଜଳି ପୋଡ଼ି ଯାଉଥିବାରୁ ଏକ ନିର୍ଜନ ଏକାକୀତ୍ୱ ତା’ର ଅନ୍ତରାତ୍ମାକୁ ଅତିମାତ୍ରାରେ ଦଗ୍ଧ କରିବାକୁ ଲାଗିଛି । ତେଣୁ, ଆଧୁନିକ ଚେତନାର ଏହି ନିର୍ଜନତାର ସଙ୍ଗୀତ ଅଧିକ ବେଦନାଦଗ୍ଧ ଓ ବିଧୂର ।”(୧୭)

ଜୀବନ ଓ ଅସ୍ତିତ୍ୱର ବିପରୀତ ହେଉଛି ଶୂନ୍ୟତା । ଶୂନ୍ୟତାରବୋଧ ମଣିଷର ନିଜସ୍ୱ, ତା’ର ଅସ୍ତିତ୍ୱରୁ ଜାତ ଏକ ସ୍ୱାଭାବିକ ଅନୁଭବ । ପ୍ରତ୍ୟେକ ମଣିଷ ଭଙ୍ଗା ଭଙ୍ଗା ଏବଂ ମଣିଷର ଅନ୍ତର୍ଗଠନରେ ମଧ୍ୟ ଶୂନ୍ୟତା ପୂରି ରହିଛି । ତେଣୁ ମଣିଷର ଅପ୍ରାପ୍ତି, କାରୁଣ୍ୟ ଓ ଅସହାୟତାରୁ ଜନ୍ମ ଏ ଶୂନ୍ୟତା ଯେପରି ଜୀବନର ଚରମ ଯନ୍ତ୍ରଣାକୁ ହିଁ ଅଙ୍ଗୀକାର କରିନେଇଛି। ସନ୍ଦିଗ୍ଧତା, ଉଦ୍‌ବେଗ, ଉଦ୍ଭଟତା, ବିଚ୍ଛିନ୍ନତା, ସୀମାବଦ୍ଧତା ଏବଂ ମୃତ୍ୟୁ କାତର ଅନୁଭବ ହେଉଛି ଏହି ଶୂନ୍ୟତାର ଅନୁଭବ । ଏ କ୍ଷେତ୍ରରେ ରାମଚନ୍ଦ୍ର ବେହେରା ଜଣେ ସାର୍ଥକ କଥାଶିଳ୍ପୀ ।

‘ଲେଉଟାଣି’ ଏକ ମୃତ୍ୟୁ ଚେତନାର ଗଳ୍ପ । ଗଳ୍ପର ନାୟକ ଅମୂଲ୍ୟବାବୁ କ୍ୟାନସର ପୀଡ଼ିତ । ମୃତ୍ୟୁ ସହିତ ପ୍ରତିକ୍ଷଣରେ ସେ ସାମନାସାମନି । ପତ୍ନୀ ହେମବତୀ ନିଜ ଅବାଧ୍ୟ ସନ୍ତାନ ଦିବାକରର ଅକାଳ ମୃତ୍ୟୁକୁ ସାମ୍ନା କରନ୍ତି । ଜୀବନର ଦୁଇ ଦୁଇଟି ନିଦାରୁଣ ବିପର୍ଯ୍ୟୟ ଭିତରେ ମଣିଷ ନିଃସଙ୍ଗ, ଯନ୍ତ୍ରଣାକ୍ତ, ଏକାକୀ ଓ ଅସହାୟ ହେବା ସ୍ୱାଭାବିକ । ଅସହାୟ ମଧ୍ୟରେ ସେ ମଧ୍ୟ ମୃତ୍ୟୁକୁ ପ୍ରତୀକ୍ଷା କରିଛନ୍ତି । ମୃତ୍ୟୁ ଚେତନାଟି ଏହି ଗଳ୍ପରେ ଅଧିକ ସ୍ପଷ୍ଟ ।

ମୃତ୍ୟୁ ଧ୍ରୁବ । ଜନ୍ମ ନେଲେ ମୃତ୍ୟୁ ସୁନିଶ୍ଚିତ । ମୃତ୍ୟୁ ହେଉଛି ଜୀବନର ପରିଣତି । ଜୀବନଚକ୍ରରେ ମୃତ୍ୟୁ ଏକ ବିଶ୍ରାମସ୍ଥଳୀ । ଜୀବନରେ ମୃତ୍ୟୁକୁ ବିଭିନ୍ନ ଭାଷାରେ ଅବବୋଧକୁ ନିଆଯାଏ; ଯଥା- ମୃତ୍ୟୁ କୁତ୍ସିତ, ଭୟଙ୍କର, ଭୀଷଣ ଓ ଆତଙ୍କପ୍ରଦ । ପୁଣି ଜୀବନ ପାଇଁ ମୃତ୍ୟୁ ଏକ ମୁକ୍ତି, ଆହ୍ଲାଦକର, ଶାନ୍ତିପ୍ରଦ, ଚିରବିଶ୍ରାମସ୍ଥଳୀ ରାମଚନ୍ଦ୍ର ବେହେରାଙ୍କ ଗଳ୍ପରେ ମୃତ୍ୟୁ ସମ୍ପର୍କୀୟ ଅବବୋଧ ଅସ୍ତିସୂଚକ ପୁଣି ନେତିବାଚୀ ।

‘କୁହୁଡ଼ି ଓ ତୃଷ୍ଣା’ ଗଳ୍ପରେ କ୍ୟାନସର ପୀଡ଼ିତ ଚରିତ୍ରଟି ପାଇଁ ମୃତ୍ୟୁ ରୋଗରୁ ମୁକ୍ତି, ଅନ୍ତିମ ଓ ଶୋଚନୀୟ ପରିଣତି । “ମୃତ୍ୟୁ ଏକ ସାଧାରଣ ଅଭିଜ୍ଞତା ଯାହାକୁ ଶୀତରାତିରେ ବିଜୁଳିର ଆଲୁଅ ନ ଥିବା ଏକ ସହରର କଳା ମଟମଟ ରାସ୍ତାରେ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଚାଲିବା ଭଳି ଏକ ଅଭିଜ୍ଞତା ସହିତ ତୁଳନା କରାଯାଇପାରେ ।”(୧୮)

‘ଆତ୍ମହତ୍ୟା’ ଗଳ୍ପରେ ମୃତ୍ୟୁଚେତନା ସମ୍ମାନସୂଚକ, “ମରିବାର ଅର୍ଥ ତା’ହେଲେ କ’ଣ? ଦଗ୍ଧୀଭୂତ ଜୀବନରୁ ମୁକ୍ତିଲାଭ କରିବା? ଯନ୍ତ୍ରଣା, ପରାଜୟ ଓ ଶୂନ୍ୟତାର ବନ୍ଧରୁ ଖସିଯିବା?”(୧୯)

‘ଦୁଇଟି ବ୍ରାକେଟ୍’, ‘ମିଛସାକ୍ଷୀ’, ‘ଲେଉଟାଣି’, ‘ନିଃସଙ୍ଗ ବର୍ତ୍ତମାନ’ ପ୍ରଭୃତି ଗଳ୍ପରେ ମୃତ୍ୟୁ ପ୍ରତି ରହିଛି ଅସ୍ତିବୃକ୍ଷ ଦୃଷ୍ଟିଭଙ୍ଗୀ । କିନ୍ତୁ ‘ଭୟ’, ‘ଶେଷ ଦୃଷ୍ଟି’, ‘ରଙ୍ଗମଞ୍ଚ’, ‘ଆତ୍ମହତ୍ୟା’, ‘ପୋଷ୍ଟ ଅଫିସ’, ‘ଅଚିହ୍ନା ପୃଥିବୀ’, ‘ଦୁଇଯି ମୁର୍ଦ୍ଧାର ସମ୍ପର୍କରେ’ ପ୍ରଭୃତି ଗଳ୍ପରେ ମୃତ୍ୟୁ ନେତିବାଦୀ । ‘ଶେଷ ଦୃଷ୍ଟି’ ଗଳ୍ପରେ ବାପାଙ୍କ ମୃତ୍ୟୁପାଇଁ ଅପେକ୍ଷା କରିଥିବା ପଙ୍କଜ ପିତୃ ବିୟୋଗର ଅବସନ୍ନତାରେ ଯେତିକି ଆଶଙ୍କିତ ନୁହେଁ ସେତିକି ଭୀତ ଓ ଉଦ୍‌ବିଗ୍ନ । ତା’ ଦୃଷ୍ଟିରେ ମୃତ୍ୟୁର ଉପସ୍ଥିତି ଅତ୍ୟନ୍ତ ଦୁଃସହ ଏବଂ ଅନତିକ୍ରମଣୀୟ । ‘ରଙ୍ଗମଞ୍ଚ’ ଗଳ୍ପରେ ଅଭିନୟ ଭିତରେ ସୁଦ୍ଧା ମୃତ୍ୟୁ ପ୍ରତି ଭୟ ମୂଳକ । ମୃତ୍ୟୁ ଦିଶେ ପଙ୍ଗୁ, ଆତ୍ମିକ ଶୂନ୍ୟ ଓ ରିକ୍ତଭାବ ଦ୍ୱାରା ବିପର୍ଯ୍ୟସ୍ତ । “ମୃତ୍ୟୁ ଗୋଟାଏ ଭୟାବହ ପାରାଲିସିସ୍ ତା’ର ଦେହ ଓ ଭାବନା ଭିତରେ ସଂକ୍ରମିତ ହୋଇଯାଉଛି ଓ ସେଇ ସଂକ୍ରମଣ କ୍ରମେ କୋଠରି ଅତିକ୍ରମ କରି ବିଶ୍ୱର ସକଳ ଜୀବନକୁ ଅଥର୍ବ କରିପକାଉଛି ।”(୨୦)

‘ପୋଷ୍ଟ ଅଫିସ’ ଗଳ୍ପରେ ମୃତ୍ୟୁ ରାଶି ରାଶି ଅନ୍ଧକାର । ‘ଅଚିହ୍ନା ପୃଥିବୀ’ ଗଳ୍ପରେ ମୃତ୍ୟୁ ଅତ୍ୟାଚାରୀ । ‘ଝୁଲି ରହିବା ସମ୍ପର୍କରେ’ ଗଳ୍ପରେ ମୃତ୍ୟୁ ପ୍ରତି ରହିଛି ନେତିବାଦୀ ଦୃଷ୍ଟିକୋଣ । ଏହା ଭୟଭୀତ ଓ ପ୍ରତିକ୍ରିୟାଶୀଳ ।

ରାମଚନ୍ଦ୍ର ବେହେରାଙ୍କ ବହୁ ଗଳ୍ପରେ ଅସହାୟତାକୁ ନେଇ ନିଃସଙ୍ଗତା ପରିପ୍ରକାଶ ଲାଭ କରିଛି । ତେବେ କେତେକ ଗଳ୍ପରେ ମୃତ୍ୟୁଚେତନା, ସନ୍ଦିଗ୍ଧତା, ଉଦ୍‌ବେଗ, ବିଚ୍ଛିନ୍ନତା, ଶୂନ୍ୟତା ଆତ୍ମପ୍ରକାଶ କରିଛି । ସ୍ୱାଧୀନତା ପରବର୍ତ୍ତୀ ଆଧୁନିକ ଚେତନାର ସ୍ୱରୂପ ମଧ୍ୟରୁ ମୃତ୍ୟୁ ଚେତନା ବିଭକ୍ତି ବ୍ୟକ୍ତିତ୍ୱ, ବିଚ୍ଛିନ୍ନତାବୋଧ, ଶୂନ୍ୟତାବୋଧ, ଏକାକୀବୋଧ ଅନ୍ୟତମ; ଯାହାକି ସମକାଳୀନ ସମାଜର ସମସ୍ୟା ଓ ସଙ୍କଟକୁ ସ୍ୱାଭାବିକ ଢଙ୍ଗରେ ଚିତ୍ରଣ କଲାବେଳେ ଗାଳ୍ପିକ ରାମଚନ୍ଦ୍ର ବେହେରାଙ୍କ ଗଳ୍ପ ସାମ୍ରାଜ୍ୟରେ ଆତ୍ମପ୍ରକାଶ କରିଛି ।

ରାମଚନ୍ଦ୍ର ବେହେରାଙ୍କ ମଧ୍ୟାହ୍ନର ଛାଇ, ଏକ ସାକ୍ଷାତକାର ପରେ, ଦୁଇଟି ମୃର୍ଦ୍ଦାର ସମ୍ପର୍କରେ, ଘରବାହୁଡ଼ା, ଶୋଷ, ଶିକାର, ସେତୁ, ତ୍ରିଶଙ୍କୁ, ବର୍ଣ୍ଣବୋଧପାଠ, ଭୟ, ଗଳ୍ପରେ ମାନସିକ ସଙ୍କଟ, ଦ୍ୱନ୍ଦ୍ୱ ଓ ଗ୍ଲାନିବୋଧ ଆତ୍ମପ୍ରକାଶ କରିଛି । ମଧ୍ୟାହ୍ନର ଛାଇ ଗଳ୍ପରେ ମିଷ୍ଟର ଦାସଙ୍କ ଅପରାଧ ମାନସିକତା, ଉଦ୍‌ବେଗ ଏବଂ ଅବଚେତନର ଅଭୂତ କାରସାଦି ବିଷାଦ ଭାବ ସୃଷ୍ଟି କରିଛି । 'ସେତୁ' ଗଳ୍ପରେ ଶାରୀରିକ ବିକଳାଙ୍ଗର ମାନସିକ ନ୍ୟୁନବୋଧ ଓ ତାହାର ପ୍ରତିକ୍ରିୟାଜନିତ କାର୍ଯ୍ୟାବଳୀ ପ୍ରତିପାଦିତ ହୋଇଛି । ମାନସିକ ନ୍ୟୁନବୋଧ ବ୍ୟକ୍ତିକୁ ସନ୍ଦେହୀ, ଦୁରାଚାରୀ ଓ ପ୍ରତିଶୋଧଲିପ୍ସୁ କରିପକାଇଥାଏ । ସୁବିଧା ପାଇବା ମାତ୍ରେ ସେ ପ୍ରତିପକ୍ଷକୁ ଆହତ କରେ ଏବଂ ସବୁବେଳେ ନିଜର ଅପୂର୍ଣ୍ଣତା ପ୍ରତି ଉଚିତରୁ ଅଧିକ ସଚେତନ ରହେ; ନିଜର ନ୍ୟୁନତାକୁ ଅତିକ୍ରମ କରିବାକୁ ଯାଇ ସେ ଅଧିକରୁ ଅଧିକ ମାନସିକ ଯୁକ୍ତି ଓ ପ୍ରତିପକ୍ଷର ଦୁର୍ବଳତାର ସୂତ୍ର ସଂଗ୍ରହ କରେ । କୌଣସି ଏକ ସମୟରେ ନିଜ ଭଳି ଆଉ ଜଣେ ନ୍ୟୁନବୋଧ ମାନସିକତାର ଚରିତ୍ରକୁ ଭେଟି କାହାର ବିକ୍ରିୟା ଦେଖିଲେ ସେ ନିଜଠାରେ ତଥାପି ଏକ ପୂର୍ଣ୍ଣତା ଥିବାର ଅନୁଭବ କରେ । ତା' ଭିତରେ ଅପର ଚରିତ୍ର ପ୍ରତି ଯେଉଁ ସହାନୁଭୂତି ଓ ଭୟ ଆସେ ତାହା ତାକୁ କିଞ୍ଚିତ ମାତ୍ରାରେ ସାହାସୀ କରାଏ ।(୨୧)

ଗାଳ୍ପିକ ରାମଚନ୍ଦ୍ର ବେହେରା ଏହି ସେତୁ ଗଳ୍ପରେ ଯେପରି ନ୍ୟୁନ ମାନସିକତାକୁ ଚିତ୍ରଣ କରିଛନ୍ତି ତାହା ବିଚାର୍ଯ୍ୟ- "ମୋତେ ଜଣାଗଲା ଏ ପୃଥିବୀକୁ ମୋ ସ୍ଥିତି ହଜିଯାଇଛି କ୍ରମଶଃ । ହଠାତ୍ ମୋର କଣ୍ଠ ବାଷ୍ପରୁଦ୍ଧ ହୋଇଗଲା । ମୁଁ ସବୁ ଭଳି ଦିନେ ପାଗଳ ହୋଇଯିବିକି? ଯେହେତୁ ଆମେ ଦୁହେଁ ଅସମ୍ପୂର୍ଣ୍ଣ । □□□ ମାତ୍ର ଏ ଅସମ୍ପୂର୍ଣ୍ଣତା ଯଦି ସତ୍ୟ ଓ ବାସ୍ତବ କିଏ ତେବେ ସେ ମଣିଷ କ'ଣ ସେ ବସ୍ତୁର ନାମ ଯାହାଠାରେ ଏହାର ବ୍ୟତିକ୍ରମ ଦେଖାଯାଇପାରେ ।"(୨୨)

ରାମଚନ୍ଦ୍ର ବେହେରାଙ୍କ ଗଳ୍ପଗୁଡ଼ିକରେ ଜୀବନ ପ୍ରତି ଦୃଷ୍ଟିକୋଣ ସୁତୀବ୍ର । ପ୍ରାୟ ପ୍ରତିଟି ଗଳ୍ପରେ ସଂଶୟବୋଧ ଓ ପ୍ରତ୍ୟୟବୋଧ ପ୍ରକାଶ ପାଇଛି। ପ୍ରାଥମିକ କାଳର ଗଳ୍ପଗୁଡ଼ିକରେ ରହିଛି ସଂଶୟବେଶଧ, ପରବର୍ତ୍ତୀ ଗଳ୍ପମାନସରେ ପ୍ରତ୍ୟୟବୋଧ ଅଧିକ । ପ୍ରଥମ ସଂକଳନର ଶୀର୍ଷକ ଗଳ୍ପ 'ଦ୍ୱିତୀୟ ଶ୍ମଶାନ'ଠାରୁ ବିଭିନ୍ନ ଗଳ୍ପରେ ଜୀବନପ୍ରତି ସଂଶୟବୋଧ ପରିଲକ୍ଷିତ । ଏହା ଚରିତ୍ର, ପରିସ୍ଥିତି ଏବଂ କେତେବେଳେ ଅଭିବ୍ୟକ୍ତିରେ ଆତ୍ମପ୍ରକାଶ କରିଛି । ପରିସ୍ଥିତିଗତ ସଂଶୟବୋଧ ଦ୍ୱିତୀୟ ଶ୍ମଶାନ ଗଳ୍ପରେ ପ୍ରତିଫଳିତ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯେଉଁ ପ୍ରବାହ ତାକୁ ଜୀବନ କହନ୍ତି । ତା'ର ଶେଷ ପରିଣତି ମୃତ୍ୟୁ / ଶ୍ମଶାନ । ଏଣୁ ଗଳ୍ପ ସଂକଳନର ନାମ 'ଦ୍ୱିତୀୟ ଶ୍ମଶାନ' । ଅନୁରୂପ ଭାବରେ 'ପୋଷକ' ଗଳ୍ପରେ ଜୀବନ ପ୍ରତି ଅଲୋଡ଼ା ଉପଲବ୍ଧ ଏବଂ ଜୀବନ ଏକ ଗୁରୁତ୍ୱହୀନ ଅନାବଶ୍ୟକତାକୁ ଗଳ୍ପ ଚରିତ୍ର ପ୍ରଦୋଷ ଉପଲବ୍ଧ କରିଛି। "ପ୍ରଦୋଷ ଉପଲବ୍ଧ କଲା, କେତେ ଗୁରୁତ୍ୱହୀନ ଅନାବଶ୍ୟକ ଏ ଜୀବନ, ଯାହାର ସଂରକ୍ଷଣ ପାଇଁ ମଣିଷକୁ ଅହୋରାତ୍ର ସଂଗ୍ରାମ କରିବାକୁ ହୋଇଥାଏ ।"(୨୩)

'ସଙ୍କେତ' ଗଳ୍ପରେ ନାୟକ ଅନୁରୂପ ଭାବରେ ଜୀବନପ୍ରତି ସଂଶୟକୁ ଅନୁଭବ କରିଛି। ସେ ବିଷର୍ଣ୍ଣବୋଧ ମଧ୍ୟରେ କହିଛି- "ତା' ହେଲେ କ'ଣ ବଞ୍ଚିବାର ଅର୍ଥ ହେଉଛି ମନୋଟୋନି ଓ ବିକୃତ ସମୟର ଦୀର୍ଘ ସ୍ରୋତ ସନ୍ତରଣ କରିବା ଯେଉଁ ସନ୍ତରଣ ପ୍ରତିଶ୍ରୁତିହୀନ ଓ ବିରକ୍ତିକର?"

'ରଙ୍ଗମଞ୍ଚ' ଗଳ୍ପରେ – ଖାଲି ବଞ୍ଚି ରହିବାଟା ଜୀବନ ନୁହେଁ □□□ ଅପ୍ରତ୍ୟାଶିତ ଭାବେ ମଣିଷମାନଙ୍କ ଉପରେ ଭୂମିକା ଲଦି ଦିଆଯାଏ; ତାହାକୁ ସେମାନେ ପସନ୍ଦ କରନ୍ତି ନାହିଁ ଅଥବା ଅଭିନୟ କରିବାକୁ ବାଧ ହୋଇଥାଆନ୍ତି ।

'ପାଚେରି' ଗଳ୍ପରେ ଜୀବନର ସଂଶୟବୋଧ ନର୍କତୁଲ୍ୟ ପ୍ରତୀତ ହୋଇଛି। ଅଭାବର ଯନ୍ତ୍ରଣା ଓ ପୀଡ଼ା ଅନତିକ୍ରମ୍ୟ । ଏପଟେ ନୁହେଁ ପାଚେରି ସେପଟେ ଜୀବନର ସ୍ୱାଦ ଅଛି । "ନରକ ଆଉ କାହାକୁ କହନ୍ତି? ଏଇ ଜୀବନପରା! ଜନମ ହେଲାମାନେ ସଢ଼ିବା ଆରମ୍ଭ କଲ, ଶାନ୍ତି ନାହିଁ ।"(୨୪)

'ଶିକାର' ଗଳ୍ପରେ ଜୀବନ ପ୍ରତି ବିମର୍ଷ ଦୃଷ୍ଟିକୋଣ ପରିଲକ୍ଷିତ । "ସୂର୍ଯ୍ୟାସ୍ତ ପରେ ହିଁ ଅନ୍ଧକାର ହେବ ଓ ଦିନର କାର୍ଯ୍ୟକ୍ରମ ଶେଷ ହେବ । ଏହି ସହଜ କଥାଟି ଜାଣିବା ପରେ ଆକାଶ ଆଡ଼େ କେଉଁ ଭରସା ନେଇ ଚାହିଁବ ଜଣେ ଲୋକ?"(୨୫)

'ଦୁଇଟି ମୃର୍ଦ୍ଦାର ସମ୍ପର୍କରେ' ସେହି ସଂଶୟ ଓ ବିଷାଦ ଅନୁଭୂତି ପରିଲକ୍ଷିତ । "ଜୀବନର ସମସ୍ତ ଯୋଜନା ମୁକ୍ତିର ସମସ୍ତ ସ୍ୱପ୍ନ ଏହିଭଳି ବିପର୍ଯ୍ୟସ୍ତ ହୁଏ ।"(୨୬)

'ବିପନ୍ନ ହୃଦୟ' ଗଳ୍ପରେ ଜୀବନ ଦୁଃସ୍ଥିତି ଓ ସଙ୍କଟ ଆତ୍ମପ୍ରକାଶ କରିଛି । ଟିକି ଝିଅଟିର ଦୁର୍ବଳ ହୃତପିଣ୍ଡକୁ ନେଇ ପାରିବାରିକ ସଙ୍କଟ ଓ ସଂଶୟ ଆତ୍ମପ୍ରକାଶ କରିଛି । "ଏମିତି ଗୋଟିଏ କଲବଲ ଜୀବନ ଦେଖି ଦେଖି ସେ କ୍ରମେ ଭୁଲିଯାଇଛି ଯେ, ଏ ସଂସାରରେ ସୁସ୍ଥ ଶିଶୁ ଜନ୍ମ ନିଏ, ବଢ଼ୁହୁଏ ଏବଂ କେତେ କ'ଣ କରିଯାଏ ।"(୨୭)

'ଅସମାହିତ'ରେ ସେହିପରି ଜୀବନ ପ୍ରତି ସଂଶୟବୋଧ ସୁତୀବ୍ର । "ମରିଯିବା ଭଲ । ତା'ଠୁ ଆହୁରି ଭଲ ଆଦୌ ଜନ୍ମ ନ ହେବା ।"(୨୮)

'ଅନ୍ତିମ ଦୃଶ୍ୟ' ଗଳ୍ପରେ ଗୋଟିଏ ସାପୁଆ କେଳାର ଜୀବନ ସଂଶୟ, 'ଟ୍ରାଫିକ ପୋଲିସ' ଗଳ୍ପରେ ଜୀବନର ଅସହାୟତା, 'ନିଃସଙ୍ଗ ବର୍ତ୍ତମାନ' ଗଳ୍ପରେ ନିଃସଙ୍ଗତା, 'ନୀଳକଣ୍ଠ' ଗଳ୍ପରେ ଜୀବନ ପ୍ରତି ପ୍ରଲମ୍ବିତ ଆଶଙ୍କା ପ୍ରକାଶ ପାଇଛି । 'ନୀଳକଣ୍ଠ' ଗଳ୍ପର ଚରିତ୍ର ଅତନୁ ଉପଲବ୍ଧ କରିଛି ଯେ - "ଏଠାରେ ଘାଣ୍ଟି ଚକଟି ନ ହେଉଛି କିଏ? ଆଶଙ୍କା କଥା ତୁମେ ଦୁହେଁ କରୁଛ; ହେଲେ ଜୀବନଟା ତ ଗୋଟେ ପ୍ରଲମ୍ବିତ ଆଶଙ୍କା ।"(୨୯)

'ପାଣ୍ଡୁଲିପି' ଗଳ୍ପରେ ଦୁଃସ୍ଥିତି ଓ ସଂଶୟବୋଧ ପ୍ରକଟିତ । ନିଜ ଭିତରେ ବ୍ୟଥା ବେଦନାକୁ ବ୍ୟକ୍ତି କରିଦେବାପାଇଁ ମନ ଛଟପଟ ହୁଏ । "ସବୁ ଘଟଣା ତ ବିଫଳତାର ଘଟଣା ଭଳି ଲାଗୁଛି, ସ୍ୱପ୍ନଭଙ୍ଗ, ମୋହମୁକ୍ତିର ଘଟଣା । ସବୁ ଜଣାପଡୁଛି ପ୍ରତାରଣା, ମିଛ ।"(୩୦)

'ଫଟାକାନ୍ଥର ଗଛ' ଉପନ୍ୟାସିକା ଗ୍ରନ୍ଥରେ ପ୍ରକାଶିତ ପାଞ୍ଚଗୋଟି ବଡ଼ଗଳ୍ପ ବା ଉପନ୍ୟାସିକା ମଧ୍ୟରୁ 'ଗାଁରୁ ମହାନଗର' ଉପନ୍ୟାସିକାରେ କଥାକାର ରାମଚନ୍ଦ୍ର ବେହେରା ସମାଜର ଆତଯାତ ସବୁ ସ୍ତର, ସବୁ ଶ୍ରେଣୀ ମଣିଷମାନଙ୍କର ଜୀବନର ବ୍ୟାଖ୍ୟା କରିବାରେ ପ୍ରୟାସ କରିଛନ୍ତି । ସେ ଗାଁ ହେଉ କି ସହର ହେଉ, ଧନୀ ଲୋକ ହେଉ କି ଗରିବ ଲୋକ, ପ୍ରତ୍ୟେକଙ୍କ

ଜୀବନଧାରା ଭିତରେ ଲୁକ୍କାୟିତ ଥିବା ରହସ୍ୟକୁ ଉଦ୍ଘାଟନ କରିବାପାଇଁ ପ୍ରୟାସ କରିଛନ୍ତି । ସ୍ଥୂଳ ଜୀବନଧାରା ଓ ସୂକ୍ଷ୍ମ ମାନସିକତା ଉଭୟ ତାଙ୍କ ଅନୁଶୀଳନର ଉପାଦାନ ହୋଇଛନ୍ତି । ସାମ୍ପ୍ରତିକ ଜୀବନ ଅର୍ଥ ସର୍ବସ୍ୱ ହୋଇଯାଇଛି । ସାମ୍ପ୍ରତିକ ଜୀବନ ଅର୍ଥ ସର୍ବସ୍ୱ ହୋଇଯାଇଛି । ଏହାର ଚରମ ଦୃଷ୍ଟାନ୍ତ କଥାକାର ପ୍ରଦାନ କରିଛନ୍ତି ମାଥୁରଙ୍କର ଦୁଇପୁଅଙ୍କର ନୃଶଂସ ଓ ନିର୍ଦ୍ଦୟ ବ୍ୟବହାରରେ । ଲେଖକଙ୍କ ଭାଷାରେ ଏ ନିର୍ଯ୍ୟାତନା, ଏ ଅତ୍ୟାଚାର ମୃତ୍ୟୁଠୁ ମଧ୍ୟ ଅଧିକ ଗୁଣରେ ପୀଡ଼ାଦାୟକ । କଥାକାର ରାମଚନ୍ଦ୍ର ବେହେରା ଜୀବନର ଅସାରତାକୁ ବର୍ଣ୍ଣନା କରିଛନ୍ତି କାବ୍ୟିକ ଶୈଳୀରେ । ଶୂନ୍ୟତାବୋଧ, ନୈରାଶ୍ୟ, ହତାଶା ଓ ବ୍ୟର୍ଥତା ଜୀବନର ଅପରିହାର୍ଯ୍ୟ ଉପାଦାନ । ବଞ୍ଚିବାର ସ୍ପୃହା ସ୍ଥାଣୁ ଓ ସ୍ଥାବିର। ଗାଳ୍ପିକଙ୍କ ଭାଷାରେ- "ସବୁ ଜଣାପଡୁଛି ଅର୍ଥହୀନ ଅଭାବଗ୍ରସ୍ତ । ଆଦୌ ଭଲ ଲାଗୁନାହିଁ ଜୀବନର ଏ ଅପରାହ୍ନ । ସାରା ଜୀବନ ସଂଗ୍ରାମ କରି ସେ ପ୍ରଚୁର ଅର୍ଥ ଉପାର୍ଜନ କରିଛନ୍ତି । ସେତେବେଳେ ଏ ଉପାର୍ଜନ କରିବାର ନିଶା ହିଁ ଥିଲା ଏକମାତ୍ର ମନ୍ତ୍ର ତାଙ୍କପାଇଁ । ଏବେ ଅବସର ଜୀବନ ଅଶାନ୍ତ ଓ ଯନ୍ତ୍ରଣା ଦଗ୍ଧ ହେବାବେଳେ ସେ ଅନୁଭବ କରିଛନ୍ତି, ଚାରିଆଡ଼େ ଯେମିତି ରହିଛି ଶୂନ୍ୟତା ଓ ଶୂନ୍ୟତା । ଏତେ ଭୟାବହ ଓ ବିଶାଳ ଏ ଶୂନ୍ୟତା ଯେ, ତାହା ମଧ୍ୟରେ ସେ ଯେମିତି ଲୋପପାଇଯିବେ । ତାଙ୍କର ଚିହ୍ନବର୍ଣ୍ଣ ମଧ୍ୟ ମିଳିବ ନାହିଁ, ଗୋଟେ ସଂକ୍ଷିପ୍ତ ଗନ୍ଧ ଯେମିତି ହରାଏ ନିଜର ସ୍ଥିତି ପବନ ଭିତରେ । ଏବେ କାତର ପ୍ରାର୍ଥନାଟେ ପ୍ରତିଧ୍ୱନିତ ହେଉଛି ତାଙ୍କର ଶୂନ୍ୟ ଅଥର୍ବ ଅନ୍ତରାତ୍ମା ଭିତରେ – ମୁଁ ମରିବାକୁ ଚାହେଁ, ଚଞ୍ଚଳ । ଅବିକା ।"(୩୧)

'ବେନାମା ଚିଠି' ଉପନ୍ୟାସିକାରେ ସାମ୍ପ୍ରତିକ ରାଜନୀତିକ ବିଧି ବ୍ୟବସ୍ଥା ଭିତରେ ସାମାଜିକ ଓ ସାଂସ୍କୃତିକ ଜୀବନ ବିପର୍ଯ୍ୟସ୍ତ, ଅର୍ଥନୀତିକ ଜୀବନ ବିକଳାଙ୍ଗ, ସାଂସ୍କୃତିକ ଐତିହ୍ୟ ଧ୍ୱଂସମୁଖୀ, ପାରମ୍ପରିକ ଧର୍ମ ବିଶ୍ୱାସ ବିକୃତ; ସେସବୁର ଏକ ରଗ୍‌ଣ ମାନସିକତାକୁ ଗାଳ୍ପିକ ପ୍ରକାଶ କରିଛନ୍ତି । 'ଦଇବ ଦଉଡ଼ି ଥଇଥାନ ମୁକ୍ତି'ରେ ମାନବାତ୍ମାର କାରୁଣ୍ୟ, ହାହାକାର, ବ୍ୟର୍ଥତା, ନୈରାଶ୍ୟ, ଶୂନ୍ୟତାବୋଧ ପ୍ରଭୃତିର ଚିତ୍ରପଟ ଉନ୍ମୋଚିତ । ସର୍କସର ବାଘ, ସିଂହ ଖେଳ ପ୍ରଦର୍ଶନ କରି ଚମକୃତ କରିପାରୁଥିବା ବଳଶାଳୀ ଜନ୍ତୁପରି ମଣିଷ ମଧ୍ୟ ପରିସ୍ଥିତି ପାଖରେ ଜୀବନ ସଂଗ୍ରାମରେ କ୍ଷତାକ୍ତ ଓ ଆଘାତିତ ତଥା ପ୍ରତାରିତ ହୋଇଥାଏ । ତା'ର ଜୀବନ ମଧ୍ୟ ନିଃସଙ୍ଗ, କାରୁଣ୍ୟପୂର୍ଣ୍ଣ ତଥା ଅସହାୟ । ପରାଜିତ ସୈନିକ ପରି କିଂ କର୍ତ୍ତବ୍ୟ ବିମୂଢ଼ । "ଶେଷଥର ପାଇଁ ସୁମନ ଦୃଷ୍ଟି ବୁଲାଇ ଆଣିଲା ଚାରିଆଡୁ । ସବୁ ଜଣାପଡୁଥିଲା ଫାଙ୍କା । ଆକାଶ, ମହାଶୂନ୍ୟ । ଏଣେ ଦିଗ୍ବଳୟକୁ ଛୁଉଁଥିବା ପୃଥିବୀ କେତେ ପ୍ରଶସ୍ତ । କେତେ ଅସୀମ । ଅଥଚ ପିଞ୍ଜରା ଥାଏ, ପୁଣି ଥାଏ ରେଲିଙ୍ଗର ବାଡ଼ । ଆହୁରି ଥାଏ ସେ ରହୁଥିବା କୋଠରୀ, ପି.କେ.ପିଙ୍କ ବାସସ୍ଥାନ । ଥାଏ ଏସବୁ ଅସୀମତାକୁ ବିଭାଜନ, ଖଣ୍ଡିତ କରିବାପାଇଁ – ତା' ଭିତରେ ନିର୍ଦ୍ଦିଷ୍ଟ, ସୀମିତ ସ୍ଥାନ ସୃଷ୍ଟି ପାଇଁ ।"(୩୨)

'ଭଗ୍ନାଂଶ' ଉପନ୍ୟାସିକାରେ ବିକଳାଙ୍ଗ ଓ ପୋଲିଓ ରୋଗାଗ୍ରସ୍ତ ଜୟନ୍ତୀର ହା-ହୁତାଶ ଓ ଦ୍ୱନ୍ଦ୍ୱାତ୍ମକ ପରିସ୍ଥିତି ଅସହାୟତାର ରୂପଚିତ୍ର ପ୍ରଦତ୍ତ । କ୍ଷମତାଚ୍ୟୁତ ହେବାପରେ ମହାମହିମ ରାଜା କିପରି ହେୟ ହୋଇପଡ଼ନ୍ତି ଓ ଅତି ନଗଣ୍ୟ ଲୋକ ବି ଅପମାନିତ କରିବାରେ ଦୁଃସାହସ କରେ ତା'ର ନିଚ୍ଛକ ଚିତ୍ର 'ବଳକା ସାମ୍ରାଜ୍ୟ' ଉପନ୍ୟାସିକାରେ ପ୍ରଦାନ କରାଯାଇଛି ।

'ମୁକ୍ତିର ରୂପରେଖ', 'କିପରି ନିଆଯାଏ ନିଷ୍ପତ୍ତି', 'ଅଭିନୟର ପରିଧି', 'ମୁଁ ଫେରିଆସିଛି', 'ମନିକା ଏବେ କେଉଁଠି', 'ଦୁଆର ଟିପଲେ ବାଟ', 'ପାଦତଳର ମାଟି', 'କେଉଁ ଇନ୍ଦ୍ରଜାଲର ମାୟା', 'ଚିହ୍ନା ଅଚିହ୍ନା', 'ମରୀଚିକାର ମହକ', 'ନିଖୋଜ ଅପରାଧି', 'ଧୂସର ସୂର୍ଯ୍ୟାସ୍ତ', 'ଏଇଠି ଆକାଶ' ପ୍ରଭୃତି ଉପନ୍ୟାସରେ ସ୍ଥିତିବାଦୀ ଦର୍ଶନର ପରିଚିତ ଭିତର ଦେଇ ଅସ୍ତିତ୍ୱବାଦୀ ମଣିଷର କଥା ଓ ପରିସ୍ଥିତି ଔପନ୍ୟାସିକ ପ୍ରକାରାନ୍ତରେ ସୂଚନା ଦେଇଛନ୍ତି । ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା, ପରିବେଶର ତଥ୍ୟାତ୍ମକ ଚିତ୍ରଣ ଓ ଚରିତ୍ରର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ତଥା ବ୍ୟକ୍ତିଗତ ଦାର୍ଶନିକତାର ଆରୋପ ସତ୍ତ୍ୱେ ତାଙ୍କ କଥା ପ୍ରବାହର ଚଞ୍ଚଳତା ଆତ୍ମପ୍ରକାଶ କରିଛି । ଜୀବନର ନିର୍ମମ ସତ୍ୟକୁ ଉପସ୍ଥାପନ କରିବାରେ ଔପନ୍ୟାସିକ ଅନୁଭବରୁ ଅନେକ କଥା ଉପସ୍ଥାପିତ କରିଛନ୍ତି ।

'ମରୀଚିକାର ମହକ' ଉପନ୍ୟାସରେ ମରୀଚିକା ପଛରେ ଦୌଡୁଥିବା ମଣିଷର ମାନସିକତାକୁ ଉପସ୍ଥାପନ କରାଯାଇଛି । 'ଅଭିନୟର ପରିଧି'ରେ ରାଜନୀତିକ ରୁଗ୍ଣ ମାନସିକତାର କିପରି ହସନ୍ତ ଗ୍ରାମର ଚିତ୍ରକୁ କୁତ୍ସିତ ଓ କଦାକାର କରିଛି ତାହାର ଚିତ୍ର ଉପସ୍ଥାପିତ ହୋଇଛି ।

'ଧୂସର ସୂର୍ଯ୍ୟାସ୍ତ'ରେ ପାରାଲିସିସ୍ ରୋଗରେ ଆକ୍ରାନ୍ତ ହୋଇ 'ଜେଜେ'ଙ୍କ ଅଲୋଡ଼ା ଜୀବନର ଚିତ୍ର ତଥା ନିଃସଙ୍ଗତାର ମାର୍ମିକ ଗାଥା ଉପସ୍ଥାପିତ ହୋଇଛି ।

'ମନିକା ଏବେ କେଉଁଠି' ଉପନ୍ୟାସରେ ସମାଜର ଘୃଣ୍ୟ ବ୍ୟବସ୍ଥା, ପୋଲିସର ଅପାରଗତା ଓ ରାଜନୀତିକ ନେତାମାନଙ୍କ କପଟତା ଉପନ୍ୟାସରେ ନିଃସଙ୍ଗତାର ପରିଚୟ ଦିଏ । 'ଦୁଆର ଟପିଲେ ବାଟ' ଉପନ୍ୟାସଟିରେ ଆଭାର କରୁଣ କାହାଣୀ ଚିତ୍ରିତ । ଏଥିରେ ଆତ୍ମୂଳାନ୍ତ ଜୀବନ ଯନ୍ତ୍ରଣାର ସ୍ୱର ସ୍ପନ୍ଦିତ । ବାଲ୍ୟକାଳରୁ ଦୁଃଖ ଓ ଯନ୍ତ୍ରଣା ସହିଆସିଥିବା ମାନସିକ ପ୍ରକ୍ରିୟା ଓ ପ୍ରତିକ୍ରିୟାର ପରିଚୟ ମିଳେ ଏହି ଉପନ୍ୟାସରୁ। ମୋହଭଙ୍ଗ ଘଟିଥିଲେ ମଧ୍ୟ ଭୁଲ ରାସ୍ତାରେ ପାଦ ଦେଇଥିବା ଝୁନୁର ଜୀବନ କାହାଣୀ 'କିପରି ନିଆଯାଏ ନିଷ୍ପତ୍ତି' ରେ ଚିତ୍ରିତ । ଝୁନୁର ଦୁର୍ବିସହ ଜୀବନ ଓ ନିଃସଙ୍ଗ ପଶ୍ଚାତାପ ଉପନ୍ୟାସରେ ଆତ୍ମପ୍ରକାଶ କରିଛି।

ରାମଚନ୍ଦ୍ର ବେହେରାଙ୍କ ଉପନ୍ୟାସରେ ଜୀବନ ବଞ୍ଚିରହିବା ହେଉଛି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଜୀବନଠାରୁ ବଡ଼ ଆଉ ଦୁନିଆରେ କିଛି ନାହିଁ। କୌଣସି ପରିସ୍ଥିତିରେ ଜୀବନଠାରୁ ପଳାୟନ କରିବାକୁ ପସନ୍ଦ କରିନାହାନ୍ତି ଔପନ୍ୟାସିକ । ଜୀବନକୁ ଏକାନ୍ତ ଭାବରେ ନିଃସଙ୍ଗତା ଭିତରକୁ ଠେଲି ନ ଦେଇ ଭଲପାଇବାର ସ୍ମୃତି ଓ ସ୍ୱାକ୍ଷର ପ୍ରଦାନ କରିଛନ୍ତି ଔପନ୍ୟାସିକ ।

**ସହାୟକ ଗ୍ରନ୍ଥସୂଚୀ** :


୧. ଗାହାଣ, କପିଳେଶ୍ୱର : ସୀମାବଦ୍ଧତା ଓ ମୁକ୍ତିର ସ୍ୱପ୍ନ, ଅଗ୍ରଦୂତ, ପୃ.୨

୨. ଗାହାଣ, କପିଳେଶ୍ୱର : ସୀମାବଦ୍ଧତା ଓ ମୁକ୍ତିର ସ୍ୱପ୍ନ, ଅଗ୍ରଦୂତ, ପୃ.୧୬୩

୩. ବେହେରା, ରାମଚନ୍ଦ୍ର : ଶେଷ ସୂର୍ଯ୍ୟର ବହ୍ନି, ଦ୍ୱିତୀୟ ଶ୍ମଶାନ, ଅଗ୍ରଦୂତ, ପୃ.

୪. ଗାହାଣ, କପିଳେଶ୍ୱର : ସୀମାବଦ୍ଧତା ଓ ମୁକ୍ତିର ସ୍ୱପ୍ନ, ଅଗ୍ରଦୂତ , ପୃ.୨

୫. ବେହେରା, ରାମଚନ୍ଦ୍ର : ଦ୍ୱିତୀୟ ଶ୍ମଶାନ, ଅନ୍ଧୁଣୀ, ପୃ.୭୮

୬. ବେହେରା, ରାମଚନ୍ଦ୍ର : ଦ୍ୱିତୀୟ ଶ୍ମଶାନ, ପ୍ରତିଧ୍ୱନି, ପୃ.୧୬୧
୭. ବେହେରା, ରାମଚନ୍ଦ୍ର : ଦ୍ୱିତୀୟ ଶ୍ମଶାନ, ଆତ୍ମହତ୍ୟା, ପୃ.୧୫୫
୮. ବେହେରା, ରାମଚନ୍ଦ୍ର : ଦ୍ୱିତୀୟ ଶ୍ମଶାନ, ସୀମାବଦ୍ଧ, ଅଗ୍ରଦୂତ, ପୃ.୧୦୨
୯. ବେହେରା, ରାମଚନ୍ଦ୍ର : ଅନ୍ୟ ଅନୁଭୂତି, ପୃ.୨୫
୧୦. ବେହେରା, ରାମଚନ୍ଦ୍ର: ଅଚିହ୍ନା ପୃଥିବୀ, ସର୍ବଶ୍ରେଷ୍ଠ ଚିଠି, ଅଗ୍ରଦୂତ, ପୃ.୧୦୫
୧୧. ବେହେରା, ରାମଚନ୍ଦ୍ର : ଅଚିହ୍ନା ପୃଥିବୀ, ଗ୍ୟାରେଜ, ଅଗ୍ରଦୂତ, ପୃ.୧୦
୧୨. ବେହେରା, ରାମଚନ୍ଦ୍ର: ଅଚିହ୍ନା ପୃଥିବୀ, ଗ୍ୟାରେଜ, ଅଗ୍ରଦୂତ, ପୃ.୧୦୨
୧୩. ବେହେରା, ରାମଚନ୍ଦ୍ର: ଅବଶିଷ୍ଟ ଆୟୁଷ, ଶୋଷ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ
୧୪. ବେହେରା, ରାମଚନ୍ଦ୍ର : ବଞ୍ଚିରହିବା, ବିଧାତା, ଅଗ୍ରଦୂତ, ପୃ.୧୪୦
୧୫. ସାହୁ, ଗିରିଶଚନ୍ଦ୍ର: ରାମଚନ୍ଦ୍ର ବେହେରାଙ୍କ କଥାସାହିତ୍ୟରେ ସ୍ଥାପତ୍ୟ ଓ ବୈଚିତ୍ର୍ୟ, ବିଦ୍ୟାପୁରୀ, କଟକ, ପୃ.୨୧୮
୧୬. ବାଗ, ଗୋପୀନାଥ : ରାମଚନ୍ଦ୍ର ବେହେରାଙ୍କ ଉପନ୍ୟାସର ଶୈଳୀ ଓ ସଂରଚନା, ବିଶ୍ୱମୁଖୀ ପବ୍ଲିକେଶନ, ୨୦୧୨, ପୃ.୨
୧୭. ବେହେରା, ରାମଚନ୍ଦ୍ର : ମୁକ୍ତିର ରୂପରେଖ, ବିଦ୍ୟାପୁରୀ, କଟକ, ପୃ.୧୨୦
୧୮. ବେହେରା, ରାମଚନ୍ଦ୍ର : ଧୂସର ସୂର୍ଯ୍ୟାସ୍ତ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, ପୃ.୧୨୦
୧୯. ବେହେରା, ରାମଚନ୍ଦ୍ର : ଧୂସର ସୂର୍ଯ୍ୟାସ୍ତ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, ପୃ.୧୨୧
୨୦. ବେହେରା, ରାମଚନ୍ଦ୍ର : ଧୂସର ସୂର୍ଯ୍ୟାସ୍ତ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, ପୃ.୧୦୪
୨୧. ବେହେରା, ରାମଚନ୍ଦ୍ର: ମାନିବା ଏବେ କେଉଁଠି?, ବିଦ୍ୟାପୁରୀ, କଟକ, ପୃ.୫୯
୨୨. ବେହେରା, ରାମଚନ୍ଦ୍ର: କିପରି ନିଆଯାଏ ନିଷ୍ପତ୍ତି, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ, ପୃ.୪୯
୨୩. ବେହେରା, ରାମଚନ୍ଦ୍ର: ପାଦତଳର ମାଟି, କାଦମ୍ବିନୀ ପବ୍ଲିକେଶନ, ପୃ.୧୪୪
୨୪. ବେହେରା, ରାମଚନ୍ଦ୍ର: ଅଚିହ୍ନା ପୃଥିବୀ, ପାଚେରୀ, ପୃ.୫୦
୨୫. ବେହେରା, ରାମଚନ୍ଦ୍ର: ଅବଶିଷ୍ଟ ଆୟୁଷ, ଶିକାର, ପୃ.୪୯
୨୬. ଅବଶିଷ୍ଟ ଆୟୁଷ, ଦୁଇଟି ମୂର୍ଦ୍ଧାର ସମ୍ପର୍କରେ, ପୃ.୨୪ୟ୮
୨୭. ବେହେରା, ରାମଚନ୍ଦ୍ର : ବିପନ୍ନ ହୃଦୟ, ପୃ.୭୩
୨୮. ବେହେରା, ରାମଚନ୍ଦ୍ର : ଅସମାହିତ, ପୃ.୧୦୦
୨୯. ବେହେରା, ରାମଚନ୍ଦ୍ର : ବଞ୍ଚିରହିବା ନୀଳକଣ୍ଠ, ପୃ.୭୬
୩୦. ବେହେରା, ରାମଚନ୍ଦ୍ର : ବଞ୍ଚିରହିବା ନୀଳକଣ୍ଠ, ପୃ.୯୯
୩୧. ବେହେରା, ରାମଚନ୍ଦ୍ର: ଫଟାକାନ୍ଥର ଗଛ, ବିଦ୍ୟାପୁରୀ, କଟକ, ପୃ.୪୮
୩୨. ବେହେରା, ରାମଚନ୍ଦ୍ର : ଫଟାକାନ୍ଥର ଗଛ, ଥଇଥାନ ମୁକ୍ତି, ପୃ.୨୨୩


**ପ୍ରାନ୍ତଟୀକା :**


୧- ମହାପାତ୍ର ଆଶିଷ, କାର୍ଲମାର୍କସ୍ ଜୀବନୀ: ଇ. ଷ୍ଟୋପାନୋଭା, (୨ୟ ସଂସ୍କରଣ, ନବଯୁଗ ଗ୍ରନ୍ଥାଳୟ, କଟକ, ୧୯୮୩) ପୃଷ୍ଠା- ୩ ।
୨- 'The fundamentals of Marxist Leninist philosophy' : (progress publishers, Moscow, 1977) page- 1 ।
୩- Mark Karl, Frederic Engels, Manifesto of the communist party, (Progress publishers, Moscow, 1977) ।
୪- ରଥ ବ୍ରଜନାଥ (ସଂପାଦନା), ରଘୁନାଥ ଦାସ ରଚନା ସମଗ୍ର । (୧ମ ସଂସ୍କରଣ, ଚିତ୍ରୋତ୍ପଳା ପବ୍ଲିକେସନସ୍, ବଟେଶ୍ୱର, ସାଲେପୁର, କଟକ, ୨୦୦୨) ପୃଷ୍ଠା – ୬୪୯ ।
୫- Mao-Tse – Tung, Talks at the yenan forum on Art and literature : Art and Literature. (1st edition, National Book agency pvt. Dec- 1967) p- 83 ।
୬- ଭି.ଆଇ.ଲେନିନ୍ : ସଂକଳିତ ରଚନାବଳୀ, ୧୯ଶ ଖଣ୍ଡ (ପ୍ରୋଗେସ୍ ପବ୍ଲିଶର୍ସ, ମସ୍କୋ ୧୯୬୫) ପୃ – ୫୦୫ ।
୭- ଶତପଥୀ ବିଜୟ କୁମାର, ମର୍କସବାଦର ଉତ୍ପତ୍ତି ଓ ବିକାଶ : ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା । (୧ମ ସଂସ୍କରଣ, ଓଡିଶା ବୁକ୍‌ଷ୍ଟୋର, କଟକ - ୧୯୯୫) ପୃ – ୮ ।
୮- 'ଭି.ଆଇ.ଲେନିନ୍ : ସଂକଳିତ ରଚନାବଳୀ' - ୨୯ଶ ଖଣ୍ଡ (ପ୍ରୋଗେସ୍ ପବ୍ଲିଶର୍ସ, ମସ୍କୋ ୧୯୬୫) ପୃ – ୩୦୯ ।
୯- ଲିନ୍‌ଚାନ୍‌ସ୍କି ଏ.ଭି., ଲେନିନ୍, କଳା ଏବଂ ସାହିତ୍ୟ, (ଓରିଏଣ୍ଟାଲ୍ ପବ୍ଲିସିଂ ହାଉସ୍, ବନାରସ, ୧୯୪୩) ପୃ- ୧୭୪।
୧୦- Hutchin, Marxism Gorky Literature and life (son International Authors Limited, London, 1946) page 145 ।
୧୧- ଜେନା କୁଳମଣି, ଭାବାଦର୍ଶ, ବିଜ୍ଞାନ ଓ ମାର୍କସବାଦ : ଆରୋହଣ । (ଶାରଦୀୟ ସଂଖ୍ୟା- ୨୦୧୦) ପୃ-୨୯-୩୦ ।
୧୨- ଦାଶ ଗୌରାଙ୍ଗ ଚରଣ, ଜଗତୀକରଣ ଓ ସଂସ୍କୃତି : ସଂସ୍କୃତି, ଜଗତୀକରଣ ଓ ମଂଚ ରାଜନୀତି । (ପ୍ରଥମ ସଂସ୍କରଣ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, ବିନୋଦବିହାରୀ, କଟକ, ୨୦୦୬) ପୃ-୫୨ ।
୧୩- FUKUYAMA Francis, The End of History and the Last man, (Penguin Books, London, 1952) Page. 96-97 ।


**ସହାୟକ ଓ ଆକର ଗ୍ରନ୍ଥ :**


- Eagleton, T: 1976, Marxism and literary criticism, Berkeley, University of California.
- Hobs awn, Ej: 1975, The age of capital, Charles Scribner's sons, New York.

- Mclellan, D: 1971, The thought of Karlmarx, Macmillan press, London.
- Stones, R. Key: 1998, Sociological Thinkers, Macmillan press, London.
- Marx, Karl. Engels, Friedrich: 2010, The communist manifesto, Arcturus, London.
- ଦାଶ, ଗୌରାଙ୍ଗ ଚରଣ : ୨୦୦୬, ସଂସ୍କୃତି, ଜଗତୀକରଣ ଓ ମଂଚ ରାଜନୀତି, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ ।
- ଶତପଥୀ, ବିଜୟ କୁମାର : ୧୯୯୫, ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା, ଓଡ଼ିଆ ବୁକ୍ ଷ୍ଟୋର, କଟକ ।
- Mandel, Ernest: 1977, The formation of the Economic thought of Karl Marx, New York: monthly review press.
- Suad, Filho Alfredo: 2002, The value of Marx: Political economy for contemporary capitalism, Rutledge, London.